# ସହିଦ୍ ବାସୁ-ବିସୁନି



ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର
ଓଡ଼ିଶା , ଭୁବନେଶ୍ୱର

# ସହିଦ୍ ବାସୁ-ବିସୁନି


| | |
|---|---|
| ଲେଖକ | **ଶ୍ରୀ ଅଭୟ ସୁତାର** |
| ନୂତନ ମୁଦ୍ରଣ | ୨୦୦୧ |
| ପ୍ରକାଶକ | ଡକ୍ଟର ବିମଳେନ୍ଦୁ ମହାନ୍ତି<br>ନିର୍ଦ୍ଦେଶକ,<br>**ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା**<br>ଜନଶିକ୍ଷା ଭବନ, ୟୁନିଟ-୫, ଭୁବନେଶ୍ୱର - ୭୫୧୦୦୧ |
| ମୁଦ୍ରଣ ସଂଖ୍ୟା | ୨,୦୦୦ |
| ପ୍ରକାଶନ ସଂଖ୍ୟା | ଏସ୍. ଆର. ସି.-୨୪୭-୪୮/୯୮ |
| ମୁଦ୍ରଣ | ଜଗନ୍ନାଥ ପ୍ରୋସେସ୍ ପ୍ରା. ଲିଃ, କଟକ-୨ |
| ମୂଲ୍ୟ | ଚାରି ଟଙ୍କା ମାତ୍ର |


# SAHID BASU-BISUNI


| | |
|---|---|
| Author | **Er. Abhay Sutar** |
| New Edition | 2001 |
| Publisher | Dr. Bimalendu Mohanty<br>Director,<br>**State Resource Centre for Adult Education, Orissa**<br>Janasikshya Bhawan, Unit - V,<br>Bhubaneswar - 751001 |
| No. of copies printed | 2,000 |
| Publication No. : | SRC - 247-48/98 |
| Printed at | **Jagannath ProcessPvt. Ltd.**, Cuttack-2<br>Bhubaneswar-751016 |
| Price | Rupees Four only. |

୧୯୨୧ ମସିହା ମଇ-ଜୁନ୍ ମାସର କଥା । ଧୁ ଧୁ ଖରାବେଳ । ଝାଞ୍ଜି ପିଟୁଥାଏ । ଗାଁଟା ସାରା ଶୁନ୍‌ଶାନ୍ । ଭୀଷଣ ଗରମ ଲୋକଙ୍କୁ ଅସ୍ତବ୍ୟସ୍ତ କରୁଥାଏ । ଅଦିନିଆ ମେଘଖଣ୍ଡେ କାହୁଁ ଥିଲା କେଜାଣି, ହଠାତ୍ ବର୍ଷିଗଲା । ହେଲେ ମାଟି ଭେଦିଲା ନାହିଁ । ତା' ସାଙ୍ଗକୁ ଅମାନିଆ ପବନ । ଚାଳଘରରୁ ନଡ଼ାଛପର ଉଡ଼େଇ ନେଇଥାଏ । କାଁ ଭାଁ ତାଳ ପତ୍ର ବି ଭାଙ୍ଗି ପକେଇଥାଏ ।

ବର୍ତ୍ତନୀ ଗାଁର ଦୀନବଂଧୁ ରାଉତରାୟଙ୍କ ତଳଖଞ୍ଜା ଘର । ଏହି ସମୟରେ ଚାଲିଥାଏ ଗୋପନ ବୈଠକ । ପ୍ରଜାନେତାସବୁ ଠୁଳ ହୋଇଥାନ୍ତି ଆଲୋଚନା ସଭାରେ । ଚୁପ୍ ଚୁପ୍ କଥା ଚାଲିଥାଏ । ସଭିଙ୍କ ଡର ସେହି ରାଜାଘର ଲୋକଙ୍କୁ । କାଳେ ଏ କଥା ରାଜାଙ୍କ କାନରେ ପଡ଼ିଯିବ କି ? ବୋଝ ଉପରେ ନଳିତା ବିଡ଼ାକୁ ପୁଣି ସହିବ କିଏ ?

ସରଗରମ ଆଲୋଚନା ଚାଲିଥାଏ । କିଏ କହୁଥାଏ – କାହାର ଖୁସିପାଇଁ କନିକାର ଝିଅବୋହୂଙ୍କ ଇଜ୍ଜତ ବଳି ପଡୁଛି । କିଏ କହୁଥାଏ – କାହିଁକି ପାଞ୍ଚମୁକା, ଛମୁକାର ଝିଅମାନେ ସୁନ୍ଦର ମୁହଁକୁ ଚିତା କୁଟେଇ ଅସୁନ୍ଦର କରୁଛନ୍ତି ! ଏଇମିତି କେତେ କଥା ରାଜାଙ୍କ ବିରୁଦ୍ଧରେ ଚାଲିଥାଏ ।

ହଠାତ୍ ରାଉଳିଆର ଗୋବିନ୍ଦ ଧଳ କଥା ପଡ଼ିବାରୁ ସମସ୍ତେ କାନ୍ଦି ଉଠିଲେ । ଆହା ! ବିଚରା କି ଦୁଃଖ ନ ସହିଛି !! ଧୋଇଆ ଜମିରୁ ଖଜଣା ଦେବ କେମିତି ? ଏତିକି କହିବାରୁ ଗୋବିନ୍ଦକୁ ଧରି ନେଇଗଲେ ଚାଲୁଣିଆ କଚେରିକୁ । ସେଇଠି ହେଲା ପଇଡ଼ ମାଡ଼ । ହାତୀଭଳିଆ ମରଦଟା ରକ୍ତ ବାନ୍ତି କରି ପକେଇଲା- ତା' ପରେ ସାତଟା ଦିନ ଯାଇଛି କି ନାହିଁ ନ ଖାଇ ନ ପିଇ କାନ୍ଦି କାନ୍ଦି ମରିଗଲା ବିଚରା ଗୋବିନ୍ଦା । ମରିବାର ଏଗାର ଦିନ ଯାଇ ନାହିଁ; ରାଜାଙ୍କ ଗୋବିନ୍ଦା ଜମାଦାର ଯାଇଥିଲା ଗାଁକୁ । ସେ ଗୋବିନ୍ଦ ଧଳ ସ୍ତ୍ରୀ ପଦ୍ମାକୁ ଥଟ୍ଟା କରି କହିଲା, ''କିଲୋ କାନ୍ଦୁଛୁ କାହିଁକି ? ଗୋବିନ୍ଦା ସିନା ମଲା, ମୁଁ ପରା ଅଛି ! ତୁ ଚାହିଁଲେ ଆମେ ଦିହେଁ ଘର କରିବା ।''

ବିଚାରୀ ପଦ୍ମା ସେହି ଦିନଠୁଁ ପାଗଳୀଭଳି ଗପି ଗପି କୁଆଡ଼େ ପଳେଇଛି ଯେ, ତା'ର ଖୋଜ ଖବର କିଛି ମିଳୁନି ଏଯାଏଁ । କିଏ କହୁଛି ପଦ୍ମା ନଈରେ ପଡ଼ିଲା ତ କିଏ କହୁଛି ଗୋବିନ୍ଦା ଜମାଦାର ତାକୁ ନେଇ ଯାଇଛି ।

କଥା ନ ସରୁଣୁ ବାଘପରି ରଡ଼ି ଛାଡ଼ି ପିଣ୍ଡାରୁ ଡେଇଁ ପଡ଼ିଲା ତାଖଣ୍ଡେ ନିଶ ରଖିଥିବା ପାଞ୍ଚ ହାତିଆ ମରଦଟା - ''ଛାଡ଼ି ଦିଅ ମତେ - ମୁଁ ସେ ଗୋବିନ୍ଦା ଜମାଦାରର ମୁଣ୍ଡ କାଟି ଆଣିବି । ଆରେ, କ'ଣ କରି ପାଇଛି କି ସେ !''

ଏହା ଥିଲା ବିସୁନି ମଢୁଆଳଙ୍କ ହୁଁକାର । ତା' ହୁଙ୍କାରରେ ସମସ୍ତେ ଆବାକାବା ହେଲେ ବି ସେ ରାଜା ବିରୁଦ୍ଧରେ ଖୋଲାଖୋଲି ବିଦ୍ରୋହ ପାଇଁ ସବୁବେଳେ ଆଗୁଆ ହେଉଥିଲା ।



ଆଉ ଦିନକର କଥା । ମେଘପୁର ଗାଁ ପାଠଶାଳା । ପାଠଶାଳା ବୋଇଲେ ଗଙ୍ଗାଧର ପଣ୍ଡାଙ୍କ ବାହାର ଘର । ସେ ଦିନ ଥିଲା ଗଣେଶ ଚତୁର୍ଥୀ । ଚାରିଆଡ଼େ ମହାଆନନ୍ଦରେ ଗଣେଶ ପୂଜା ଚାଲିଥାଏ । ସଂଜ ହୋଇ ଆସୁଛି । ପିଲାଏ ଠାକୁରପୂଜା ସାରି ଭୋଗ ଖାଇ ଯିଏ ଯାହାର ଘରକୁ ଚାଲି ଯାଇଥାନ୍ତି । ଆଠ ଦଶ ଜଣ ଅଧାପାଠୁଆ ମୁରବି ଆନନ୍ଦ ଚନ୍ଦ୍ର ଜେନାଙ୍କ ମୁହଁକୁ ଅନେଇ ଗୀତ ଶୁଣୁଥାନ୍ତି । ମାଟିଆ କାଗଜର ଖାତାଖଣ୍ଡିଏ ଧରି ଆନନ୍ଦ ମାଷ୍ଟ୍ରେ ଶୁଣି ପାରିବାଭଳି ଖୁବ୍ ଧୀରେ ଧୀରେ ପଢୁଥିଲେ । ସେ ଗୀତ ଭାଗବତ, ପୁରାଣ କି ମହାଭାରତ ନୁହେଁ । କନିକା ଯାତନା ଉପରେ ଭାଗବତ ବାଣୀରେ ଲେଖା ହୋଇଥିବା

ଗୀତଟିଏ । କନିକା ପ୍ରଜାଙ୍କ ପାଇଁ ଏ ଲେଖାଖଣ୍ଡିକ ଅମୂଲ୍ୟ ସଂପଦ । ରାଜାଙ୍କ ଦାଉ, ଭାଉ ଓ କଷଣ ବିଷୟରେ ଆନନ୍ଦ ମାଷ୍ଟ୍ରେ ଲେଖିଥିଲେ ସେଥିରେ । ଲୋକଙ୍କ ମନକୁ ବେଶ୍ ଛୁଇଁଥିଲା ସେ ଗୀତ । ଗୀତ ଶୁଣୁ ଶୁଣୁ କାନ୍ଦି ପକାଉଥିଲେ ସମସ୍ତେ ବିକଳ ହୋଇ । ଅଙ୍ଗେ ନିଭେଇଲା କଥାସବୁ ଗୋଟି ଗୋଟି ଲେଖା ହୋଇଛି ସେଥିରେ ।

ଗୀତ ନାଆଁ ଥିଲା, 'ଦୁଃଖିନୀ କନିକା' ।

''ଆମ୍ଭେ ତ ଚିରକାଳ ପାଇଁ ଜଙ୍ଗଲ କର ଦେଉଥାଇଁ ।
ସେ ହେତୁ ଜଙ୍ଗଲ ଆମ୍ଭର ନାହିଁ ଇଷ୍ଟେଟ୍ ଅଧିକାର ।

* * * * * * * *

କାଠକୁ ଅଙ୍ଗାର କରାଇ କର ନିଅନ୍ତି କାହିଁ ପାଇଁ ।
ତା'ପରେ ନାଳିଆରେ କର ମହମ କର ମଧୁ କର ।

* * * * * * * * *

ଅଥବା ଖାଇବା ନିମନ୍ତେ ବିକଳେ କାନ୍ଦୁଛେଁ ସମସ୍ତେ ।
କି ଅବା ପିନ୍ଧିବା ଅଭାବେ କାନ୍ଦୁଛେଁ ପରା ଏହି ଭାବେ ।

* * * * * * * * * * *

ପଡ଼ିବ ଯଦି ଦରକାର ଲେଖିବି ବାକି ଅତ୍ୟାଚାର ।
ହାକିମ ଚିଡ଼ିଲେ ଚିଡ଼ନ୍ତୁ କିଲାର ଭିତରୁ ତଡ଼ନ୍ତୁ ।
ତନୁରୁ ମାଉଁସ ଝାଡ଼ନ୍ତୁ ନତୁବା ମସ୍ତକ ମୋଡ଼ନ୍ତୁ ।''

ହଠାତ୍ ଭେଁ କରି କାନ୍ଦି ଉଠିଲା କେହି ଜଣେ । ସମସ୍ତେ ଚୁପ୍ ହୋଇଗଲେ । ରାଗରେ ତମ ତମ ହୋଇ ଥରି ଥରି ବାହା କାମୁଡ଼ି ପକେଇ ଉଠି ପଡ଼ିଲା ଭେଣ୍ଡିଆଟିଏ । ଚିତ୍କାର କରି କହିଲା - ''ଆଉ

ପଡ଼ନ୍ତୁ ନାଇଁ ଆଜ୍ଞା, ମୋ ଦିହ କ'ଣ ହେଇଯାଉଚି - ମୁଁ ଆଉ ସମ୍ଭାଳି ପାରୁ ନାଇଁ - ଏଇନେ ମୁଁ ଚାଲିଲି ରଜାଗଡ଼କୁ -ଯଉଠିଁ ପାଇବି ରଜା ଲୋକ ମୋଣ୍ଡ ମୁଡ଼ି ଖାଇଯିବି ।'' ଦି' କାନରେ ହାତଦେଇ ଥରୁଥିଲା ଲୋକଟା ।

ସେହି ଲୋକଟା ଥିଲା ବାସୁ ସେଠୀ । ଜାତିରେ ସିନା ଧୋବା, କିନ୍ତୁ ମନଟା କ୍ଷତ୍ରିୟଠୁଁ ଆହୁରି ବଡ଼ । ବିଚରା ଗରିବ । ପେଟକୁ ଦି' ମୁଠା ଖାଇବାକୁ ପାଉନି, ହେଲେ ଏକୁଟିଆ କନିକାକୁ ଦି'ଫାଳ କରିଦେବାକୁ ପଣ କରିଛି ।

ବାସୁ ସେଠୀ ଓ ବିସୁନି ମଲୁଆଳ କନିକାମାଟିର ଦୁଇଟି ବୀର ସନ୍ତାନ । ତାଙ୍କରି ପାଇଁ କନିକା ମାଟି ଆଜି ଗର୍ବରେ ଛାତି ଫୁଲେଇ କହିପାରୁଛି – ''ଦେଖରେ ଦେଖ, ମୋ ମାଟିର ପୁଅ କେମିତି ମାଆ ପାଇଁ ହସି ହସି ଜୀବନକୁ ଲୋଟେଇ ଦେଇଛି ଇଂରେଜ ଫଉଜଙ୍କ ଗୁଳି ଚୋଟରେ ।''

## ପିଲାବେଳ ଓ ପାଠପଢ଼ା

ବାସୁ-ବିସୁନି ଜଣେ ନୁହେଁ, ଦୁଇଜଣ ଲୋକ । ଜଣେ ବାସୁ ସେଠୀ ଓ ଆଉ ଜଣେ ବିସୁନି ମଲୁଆଳ । କନିକାରେ ଦୁହିଁଙ୍କର ଜନ୍ମ । କନିକା ବୋଇଲେ ଓଡ଼ିଶା ମାନଚିତ୍ରରେ ଗୋଟିଏ ଛୋଟ ବିନ୍ଦୁ ପରି । ବ୍ରିଟିଶ୍ ଶାସନ ଅଧୀନରେ ଏହାକୁ ଏକ ପଶ୍ଚିମାହାଲ ଜମିଦାରୀ କୁହାଯାଉଥିଲା । ଏହାର କ୍ଷେତ୍ରଫଳ ଚାରି ଶହ ଚାଳିଶ ବର୍ଗମାଇଲ ଥିଲା । କନିକାର କିଛି ଅଂଶ କଟକ ଜିଲ୍ଲାରେ ଓ ଅନ୍ୟ କିଛି ଅଂଶ ବାଲେଶ୍ୱର ଜିଲ୍ଲାରେ ଥିଲା । ଛମୁକା, ପାଞ୍ଚମୁକା ଓ କେରଡ଼ାକୁ ହିଁ କନିକା

କୁହାଯାଏ । ଅବିଭକ୍ତ କଟକ ଜିଲ୍ଲା (ବର୍ତ୍ତମାନ କେନ୍ଦ୍ରାପଡ଼ା ଜିଲ୍ଲା)ର ଛମୁକା ଅଞ୍ଚଳରେ ଥିବା ବର୍ତ୍ତନୀ ଗାଁ ବିସୁନି ମଲୁଆଳର ଓ ତେନ୍ତୁଳିକୋଳି ଗାଁ ବାସୁ ସେଠୀର ଜନ୍ମମାଟି ।

୧୮୮୮ ମସିହାରେ ବାସୁ ସେଠୀ ଓ ୧୮୯୦ ମସିହାରେ ବିସୁନି ମଲୁଆଳଙ୍କ ଜନ୍ମ । ବାସୁ ସେଠୀଙ୍କ ପିତା ହେଉଛନ୍ତି । କେଶରୀ ସେଠୀ । ବିସୁନିଙ୍କ ପିତା ଲକ୍ଷ୍ମଣ ମଲୁଆଳ । ଦୁହିଁଙ୍କ ମଧ୍ୟରୁ ବିସୁନିଙ୍କ ଅବସ୍ଥା ଟିକେ ଭଲ । ବାସୁ ଓ ବିସୁନି କେହି ହେଲେ ପାଠ ପଢ଼ି ନ ଥିଲେ । ସେ ବେଳରେ ପାଠପଢ଼ା ପାଇଁ ମନ ଥିଲେ ବି ସୁବିଧା ସୁଯୋଗ ଏତେଟା ନ ଥିଲା । ସହଜେ ନଈ-ନାଳଘେରା ଜଙ୍ଗଲ ପରି ଲାଗୁଥିବା ଛମୁକା ଅଞ୍ଚଳ ସବୁବେଳେ ଧୋଇ ମରୁଡ଼ିରେ ଉବୁ ଟୁବୁ ହୋଇ ଲୋକଙ୍କ ଆର୍ଥିକ ଅବସ୍ଥାକୁ ବହୁତ ଖରାପ କରିଦେଉଥିଲା । ଲୋକେ ବଞ୍ଚିବା ପାଇଁ ଅନ୍ୟର କାମଧନ୍ଦା କରି ଚଳୁଥିଲେ ।

ବାସୁ ସେଠୀ ଜାତିରେ ଧୋବା । ଜମିବାଡ଼ି ବୋଲି ଯାହା ଥିଲା, ରାଜାଙ୍କ ଲୋକେ ତାକୁ ଭୋଗଦଖଲ କରିବାକୁ ଦେଉ ନ ଥିଲେ । ରଜକ ବୃତ୍ତିକରି ସେ ପେଟ ପୋଷୁଥିଲା । ସେଥିରେ ସେ ପରିବାରବର୍ଗଙ୍କ ଭରଣ ପୋଷଣ ମଧ୍ୟ କରୁଥିଲା । ଦାରିଦ୍ର୍ୟ ଓ ଅଭାବ ଅନାଟନରେ ରହି ବାସୁ ପାଠ ପଢ଼ିବା ସୁଯୋଗରୁ ବଞ୍ଚିତ ହେଲେ ବି ତା' ମନରେ ଦେଶଭକ୍ତି ଭରି ରହିଥିଲା । ରାଜାଙ୍କ ଅନ୍ୟାୟ ବିରୁଦ୍ଧରେ ସେ ଲଢ଼ିବାକୁ କେତେବାର ଆଗଭର ହୋଇଛି । ତା' ବାପା ଓ ପରିବାର ଉପରେ ହେଉଥିବା ରାଜଅତ୍ୟାଚାର ବିରୁଦ୍ଧରେ ସବୁ ଶୁଣି ଶୁଣି ପିଲାବେଳୁ ସେ ବିଦ୍ରୋହୀ ସାଜିଛି । ପାଠପଢ଼ା କମ୍ ଥିଲେ ବି ତା'ର ବ୍ୟବହାର ଓ

ପାରିଲାପଣ ପାଇଁ ସବୁ ଲୋକଙ୍କର ଅତି ଆପଣାର ଥିଲା ସେ । ସେତେବେଳେ ଛୁଆଁ-ଅଛୁଆଁ ଭେଦଭାବ ଥିଲେ ମଧ ତାକୁ ସମସ୍ତେ ଭଲ ପାଉଥିଲେ । ସେ ସାହସୀ ଓ ନିର୍ଭୀକ ଥିଲା । ସମସ୍ତଙ୍କ ଦୁଃଖରେ ସେ ଦୁଃଖୀ ହେଉଥିଲା । ପୂର୍ବ ମେଳିରେ ବାପାଙ୍କ ସହ ଯୋଗଦେଇ ସେ  ରାଜାଙ୍କ କୋପଦୃଷ୍ଟିର ଶିକାର ହୋଇଛି କେତେ ଥର । ଆନନ୍ଦ ମାଷ୍ଟ୍ରଙ୍କ 'ଦୁଃଖିନୀ କନିକା'ର ପଦ ଶୁଣି ଶୁଣି ପିଲାଟିବେଳୁ ସେ ସବୁ ମନେ ରଖି ଦେଉଥିଲା । ଛୋଟବେଳୁ ସମଗ୍ର କନିକାର ପ୍ରଜାମେଳିରେ ସେ ଏକପ୍ରକାର ନେତା ବନିଯାଇଥିଲା । କେବଳ ସେତିକି ନୁହେଁ, ସେହି ଦିନଠାରୁ ସେ ଲାଠି, ମୁଦ୍‌ଗର ଇତ୍ୟାଦି ବୁଲେଇବା ଅଭ୍ୟାସ କରିଥିଲା ।

ଠିକ୍ ସେମିତି ଥିଲା ବିସୁନି ମଢୁଆଳ । ଜାତିରେ ଖଣ୍ଡାୟତ । ବର୍ତ୍ତନୀ ଗାଁର ଖଣ୍ଡାୟତ ସାହି ଉପରେ ରାଜାଙ୍କ କଡ଼ା ନଜର । ବିଶେଷତଃ ଖଣ୍ଡାୟତ ରାୟ ପରିବାର ଅମାପ ଧନ ସମ୍ପତ୍ତିର ଅଧିକାରୀ ହୋଇଥିବାରୁ ତାଙ୍କୁ କେହି କେହି ରାଜାଙ୍କ ପ୍ରତିଦ୍ୱନ୍ଦ୍ୱୀ ବୋଲି ମନେକରୁଥିଲେ । ବର୍ତ୍ତନୀର ଦୀନବନ୍ଧୁ ଖଣ୍ଡାୟତ ରାୟ ପରିବାର କନିକାରେ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରୁଥିଲା । ବିସୁନି ପାଠ ନ ପଢ଼ିଥିଲେ ବି ପିଲାବେଳୁ ଏହି ଖଣ୍ଡାୟତ ରାୟଙ୍କର ଏକାନ୍ତ ବିଶ୍ୱସ୍ତ ଅନୁଚରଭାବେ କାର୍ଯ୍ୟ କରୁଥିଲା । ଦୀନବନ୍ଧୁଙ୍କ ଗାଈ ଓ ମଇଁଷି ପଲର ଯତ୍ନ ନେବାକୁ ଯେଉଁମାନେ ନିଯୁକ୍ତି ପାଇଥିଲେ, ବିସୁନି ସେମାନଙ୍କ କାମ ତଦାରଖ କରୁଥିଲା । ପରେ ସେ ସର୍ଦ୍ଦାର ହୋଇଗଲା । ଦୀନବନ୍ଧୁଙ୍କ ଘରେ ଯେଉଁ ପ୍ରଜାମେଳିର ସଭା ବସେ, ସେଥିରେ ବି ସେ ଯୋଗ ଦିଏ । ରାଜାଙ୍କ ଅନ୍ୟାୟ ଅତ୍ୟାଚାର କଥା ଶୁଣି ଶୁଣି ସେ ରାଜବିଦ୍ରୋହୀ

ସାଜି ପରବର୍ତ୍ତୀ କାଳରେ ଲୋକଙ୍କ ନେତା ବନିଯାଇଥିଲା । ପିଲାବେଳୁ ସେ ଲାଠି, ତରବାରୀ ଓ ମୁଦ୍‌ଗର ଚଳାଇବା ଶିକ୍ଷାଲାଭ କରିଥିଲା । ବିସୁନି ମଧ୍ୟ ସମସ୍ତଙ୍କ ବିଶ୍ୱସ୍ତ ଓ ପ୍ରିୟ ଥିଲା । ତା'ର ନିଜ ପରିବାର ବି ରାଜ ଅତ୍ୟାଚାରରୁ ରକ୍ଷା ପାଇ ନ ଥିଲା । ସେ ଛୁଆବେଳୁ ଅନେକ କଷଣ ସହିଛି ବୋଲି ତା'ର ଲଢୁଆ ମନୋଭାବ ଦେଖାଦେବା କିଛି ଅସମ୍ଭବ ନୁହେଁ ।

ବାସୁ ଓ ବିସୁନି ଉଭୟେ ପିଲାବେଳୁ ଯୋଦ୍ଧା ମନୋବୃତ୍ତିର ଥିଲେ । ପାଠ ନ ପଢ଼ି ମଧ୍ୟ ସେମାନେ ମାଟି ମାଆର ଡାକ ଶୁଣି ପାରୁଥିଲେ । ଅନେକ ପାଠୁଆ ଲୋକଙ୍କୁ ସାହସ ଦେଇ ସେମାନେ ସାଧାରଣ ଲୋକଙ୍କ କାମରେ ସାହାଯ୍ୟ କରିବାକୁ ଚେତାଉଥିଲେ । ଛୋଟବେଳୁ ଉଭୟଙ୍କର ସେବାଭାବ ଓ ସଚ୍ଚୋଟପଣିଆ ସମସ୍ତଙ୍କୁ ମୁଗ୍ଧ କରୁଥିଲା । ଗାଁ ଗାଁରେ ବସୁଥିବା ପ୍ରଜାମେଳିର ଗୁପ୍ତ ସଭାରୁ ବାସୁ-ବିସୁନି ଜାଣିବାକୁ ପାଉଥିଲେ ଯେ, ରାଜାଙ୍କ ପାଇଁ ଆଜି କନିକାର ଏଇ ଅବସ୍ଥା । ତେଣୁ ପିଲାବେଳୁ ଦେଶପାଇଁ ସବୁ ଭୁଲି ଯାଉଥିଲେ ଦୁଇ ଜଣ । ଖବର ନେବା ଆଣିବା କରିବା, ଲୋକଙ୍କୁ ଏକାଠି କରିବା ଓ ରାଜାଙ୍କ ବିରୁଦ୍ଧରେ ମତେଇବା ଥିଲା ସେମାନଙ୍କର ମୁଖ୍ୟ କାମ ।

**କନିକା ରାଜବଂଶ ଓ ଚଉଷଠି କର**

ଖ୍ରୀଷ୍ଟୀୟ ତ୍ରୟୋଦଶ ଶତାବ୍ଦୀରେ ମୟୂରଭଞ୍ଜ ରାଜପରିବାରର ଜନୈକ ଭୁଜବଳ ଭଞ୍ଜଙ୍କ ଦ୍ୱାରା କନିକାରେ ରାଜବଂଶ ପ୍ରତିଷ୍ଠିତ ହେଲା । ସମ୍ଭବତଃ ତାହା ଅନଙ୍ଗଭୀମ ଦେବଙ୍କ ରାଜତ୍ୱ କାଳର କଥା । ତାଙ୍କ ପରେ ତ୍ରିଲୋଚନ, ଗୋପୀନାଥ, ପରମାନନ୍ଦ, ଦିବ୍ୟସିଂହ, ନରସିଂହ

ଓ ତ୍ରିବିକ୍ରମ ଇତ୍ୟାଦି କନିକାର ରାଜା ହେଲେ । ପରେ ଆଳି ରାଜବଂଶରୁ ପୋଷ୍ୟପୁତ୍ରଭାବେ ବଂଶୀଧର ଦେବ ଓରଫ୍ ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ କନିକା ଆସିଲେ । ୧୯୦୨ ମସିହାରୁ ୧୯୪୮ ପର୍ଯ୍ୟନ୍ତ ସେ ଶାସନ କଲେ ।

ଠିକ୍ ତା'ପରେ ପରେ କନିକା ପ୍ରଜାଙ୍କ ଉପରେ ବିପତ୍ତି ମାଡ଼ି ଆସିଲା । ସେତେବେଳକୁ ଇଂରେଜ ଶାସନ ଓଡ଼ିଶାରେ ନିଜର ପ୍ରାଧାନ୍ୟ ବିସ୍ତାର କରିସାରିଥାଏ । ରାଜା ବ୍ରିଟିଶ୍ ଶାସକଙ୍କୁ ସନ୍ତୁଷ୍ଟ କରିବାପାଇଁ ଏବଂ ନିଜର ରାଜକୋଷକୁ ବଢ଼େଇବା ଲାଗି ପ୍ରଜାଙ୍କ ଉପରେ ଚଉଷଠି ପ୍ରକାର କର ବସାଇଲେ । ଦିନକୁ ଦିନ ରାଜାଙ୍କ ଅତ୍ୟାଚାର ବଢ଼ିବାକୁ ଲାଗିଲା । ତେଣୁ ପ୍ରଜାମାନଙ୍କ ଦୁଃଖକଷ୍ଟର ସୀମା ରହିଲା ନାହିଁ । ଏହି ଚଉଷଠି କର ବିଷୟରେ ବିପ୍ଳବୀ ଚକ୍ରଧର ବେହେରା 'ବନ୍ଦୀର ବିଳାପ'ରେ ଲେଖିଛନ୍ତି –

ବଢ଼ାଇ ଭୂକର, ବନପଥ କର । ମତ୍ସ୍ୟ କର ପୁଣି ପଶୁଚର କର ।
ଚମ କର, ହାଡ଼ କର, ପର କର । ମହୁ କର, ଅଣ୍ଡା କର, ଘର କର ।
କଷା କର, ଫଳ କର, ଲତା କର । ହେନ୍ତାଳ ପତର କର, ଖଳା କର ।
ମହୁବସା କର, ସୁନିଆର କର । ଗଛ କର, ନାମ କଟେଇବା କର ।
ଭୁଲ୍ ସଂଶୋଧନ (କର), ନାମ ଯୋଗ କର ।
ନାମ ବଦଳାଇ କର, ଘାଟ କର ।''

କଥିତ ଅଛି ଯେ, ଅଣିରାବାଛୁରୀ ବ୍ରତ କରାଇବା କର ଓ ଦିଅଁଙ୍କ ପାଖରେ ମାନସିକ ଚୁଳ ପକେଇବା ସହ ନବବିବାହିତ ଦମ୍ପତିଙ୍କଠାରୁ ମଧୁଶଯ୍ୟା କର ମଧ୍ୟ ଆଦାୟ କରାଯାଉଥିଲା । ଏହାବ୍ୟତୀତ ଆନନ୍ଦ

ଚନ୍ଦ୍ର ଜେନାଙ୍କ 'ଦୁଃଖିନୀ କନିକା'ରେ ଚଉଷଠି କର ଓ ଅତ୍ୟାଚାର ସମ୍ପର୍କରେ ବିଶଦ ବିବରଣୀ ଦିଆଯାଇଛି । ଶୁଣାଯାଏ, ଘନଶ୍ୟାମ ମହାନ୍ତିଙ୍କ ରଚିତ 'ଦଶାହରା ଭେଟି' ପୁସ୍ତିକାରେ ଚଉଷଠି କର ସମ୍ପର୍କରେ ବର୍ଣ୍ଣନା କରାଯାଇଥିବାରୁ କନିକାରାଜା ତାଙ୍କ ନାମରେ ମାନହାନି ମକଦ୍ଦମା କରି କାରାଦଣ୍ଡ ଦେଇଥିଲେ । ସେ ସମୟରେ ସାରା ଓଡ଼ିଶାରେ ଏହା ଖୁବ୍ ଚହଳ ସୃଷ୍ଟି କରିଥିଲା ।

କନିକା ଅଞ୍ଚଳର ଦୁଃଖ ଓଡ଼ିଶାର ସବୁ ଅଞ୍ଚଳଠାରୁ ବଳି ଯାଇଥିଲା । ବ୍ରିଟିଶ୍ ଶାସକଙ୍କୁ ଅଧିକ ସନ୍ତୁଷ୍ଟ କରି କନିକା ଜମିଦାର ରାଜା ନାମରେ ପରିଚିତ ହେଲେ । ବଗର ଥଣ୍ଟ ବଢ଼ିଲେ ମୀନକୁ ଅଧିକ ବିପତ୍ତି ପଡ଼ିବାପରି ରାଜା ବୋଲାଇବା ପରେ କନିକା ରାଜା ଧରାକୁ ସରା ମନେ କଲେ । ଇଂରେଜ ସରକାରଙ୍କୁ ସନ୍ତୁଷ୍ଟ କରି ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ ସାର୍ ଓ ନାଇଟ୍ ଉପାଧି ଧାରଣ କରି ଏକାଙ୍ଗ ଚକ୍ରବର୍ତ୍ତୀ ସାଜିଲେ ।

ଯେତେ ପ୍ରକାର କର ବସାଯାଇପାରେ ତାହା ବସାଇଲେ । ବନ୍ୟା, ବାତ୍ୟାରେ ଉଜୁଡ଼ି ଯାଇଥିବା ଫସଲରୁ ନିଜେ ବଞ୍ଚିବାପାଇଁ ଚାଷୀପାଖରେ କିଛି ନ ଥିବାବେଳେ ରାଜାଙ୍କ ମନଇଚ୍ଛା ଖଜଣାବୃଦ୍ଧି ଲୋକଙ୍କୁ କାଳ ହେଲା । ଲୋକେ ଏପରିକି ଜାଉ ଖାଇବାକୁ ବି ପାଇଲେ ନାହିଁ । ତଥାପି ଅତ୍ୟାଚାରୀ ରାଜା ନିଜର ବାହାଦୁରି ପାଇଁ ଲୋକଙ୍କୁ ଶୋଷଣ କରିଚାଲିଲେ ।

**କନିକାରେ ପ୍ରଥମ କୃଷକ ଆନ୍ଦୋଳନ**

ଓଡ଼ିଶା ପ୍ରଜାସ୍ୱତ୍ୱ ଆଇନରେ ଯେଉଁସବୁ ଦୋଷଦୁର୍ବଳତା ଥିଲା,

ତା'ର ସୁଯୋଗ ନେଲେ କନିକା ଜମିଦାର । ପ୍ରଜାଙ୍କ ସ୍ୱାର୍ଥ ଅପେକ୍ଷା ଜମିଦାର ଓ ରାଜାଙ୍କ ସ୍ୱାର୍ଥ ଆଗେ ଦେଖାଗଲା । ଇନ୍ଦ୍ରମଣି ମହାନ୍ତି ନାମକ ରାଜାଙ୍କ ଚାଟୁକାର ମେନେଜରଙ୍କ ନାମ ପ୍ରଜାଙ୍କ ଆର୍ଥିକ ଅବସ୍ଥାକୁ ଅଧିକ ଦୋହଲାଇ ଦେଲା । ରାଜା 'ଇନ୍ଦ୍ରମଣି ବନ୍ଦୋବସ୍ତ' ନାମରେ ଅଧିକ ଶୋଷଣ କରିବାକୁ ଲାଗିଲେ ।

ଯେଉଁ ଲୋକ ନିଃସନ୍ତାନ ତା' ଜମି ରାଜାଙ୍କ ଦଖଲକୁ ଗଲା । ପଡ଼ିଆ ଓ ଜଙ୍ଗଲକୁ ତାଡ଼ି ଚାଷ କରୁଥିବା ଚାଷୀର ଜମିସବୁ ରାଜାଙ୍କ ଅଧୀନକୁ ଗଲା । ଲୁଣାବଂଧ ତିଆରି ନାଁରେ ଖଜଣା ବୃଦ୍ଧି କରାଗଲା । ୧୮୮୯-୯୪ରେ ହୋଇଥିବା ହୋସେନ୍ ସାହେବଙ୍କ ବନ୍ଦୋବସ୍ତ ପରେ ଜମିଦାରୀର ଆୟ ୧ ଲକ୍ଷ ୨୭ ହଜାର ୯୧୭ ଟଙ୍କା ହୋଇଥିବାବେଳେ ଇନ୍ଦ୍ରମଣି ବନ୍ଦୋବସ୍ତ ଏହାକୁ ଦୁଇଗୁଣ କରିଦେଲା । କେବଳ ଅଧିକ ଖଜଣାରୁ ଏହା ଆଦାୟ ହେଲା ।

ଏହାବ୍ୟତୀତ ପ୍ରଜାମେଳିର ଅନ୍ୟ କାରଣ ହେଲା ଜଙ୍ଗଲ ଆଇନ । କନିକା ସମୁଦ୍ର କୂଳରେ ଲୁଣା ଜୁଆରିଆ ଜଙ୍ଗଲସବୁ ଥିଲା । ସେଥିରୁ ଲୋକେ ଜାଳେଣି କାଠ, ଚାଷୋପକରଣ, ଗୃହ ଉପକରଣ ଆଦି ପାଉଥିଲେ । ଇନ୍ଦ୍ରମଣି ବନ୍ଦୋବସ୍ତରେ ଜମି କର ସହ ଜଙ୍ଗଲ କରକୁ ଯୋଡ଼ି ଦିଆଗଲା । ସେହି ଅନୁପାତରେ ପଥ କର ଓ ଜଳ କର ମଧ ବୃଦ୍ଧି କରାଗଲା । ପ୍ରଜାକୁଳ ଖଜଣା ଦେଇ ଦେଇ ନୟାନ୍ତ ହେଲେ । ଯିଏ ରାଜାଙ୍କ ବିରୁଦ୍ଧରେ ଗଲା, ସିଏ ନାହିଁ ନ ଥିବା ଅତ୍ୟାଚାର ସହିଲା । ରାଜାଙ୍କ ଆଜ୍ଞାକୁ ଅବଜ୍ଞା କଲେ ପଇଡ଼ ମାଡ଼, ବିଛୁଆତି ମାଡ଼, ଶାଙ୍କୁଚ ମାଡ଼, ନାରୀ ହରଣ, ନାରୀ ଧର୍ଷଣ ଇତ୍ୟାଦି ଶାରୀରିକ ନିର୍ଯାତନା



ଦିଆଯାଉଥିଲା । ରାଜା ଖଜଣାବୃଦ୍ଧି ପାଇଁ ବେସରକାରୀ ବନ୍ଦୋବସ୍ତ ଜାରି କରିବାରୁ ଜନ ଅସନ୍ତୋଷ ଭୀଷଣଭାବେ ବଢ଼ିବାକୁ ଲାଗିଲା ।

ବୋଝ ଉପରେ ନଳିତା ବିଡ଼ାପରି ୧୯୨୦ ମସିହା ଅଗଷ୍ଟ ମାସରେ କନିକା ଛାତି ଉପରେ ଆସିଲା ଭୟାବହ ବନ୍ୟା । କଟକ, ପୁରୀ ଓ ବାଲେଶ୍ୱର ଜିଲ୍ଲାର ଅଧିକାଂଶ ଅଞ୍ଚଳ ବନ୍ୟାରେ କ୍ଷତିଗ୍ରସ୍ତ ହେଲା । ବନ୍ଧ ଭାଙ୍ଗିଯିବା ଫଳରେ ଛମୁକା ଓ କେରଡ଼ା ଅଞ୍ଚଳରେ ନାହିଁ ନ ଥିବା କ୍ଷତି ଘଟିଲା । କନିକାର ଲୋକେ 'ହା-ଅନ୍ନ, ହା-ଅନ୍ନ' ଚିତ୍କାର

ଛାଡ଼ିଲେ । ଘରଦ୍ୱାର ଭାଙ୍ଗିଗଲା – ଲୋକେ ବିପନ୍ନ ହୋଇଗଲେ । ହଜାର ହଜାର ଏକର ଜମି ଧୋଇଗଲା । ଅନାହାରରେ ଲୋକେ ଆଉଟୁ ପାଉଟୁ ହେଲେ । ବାଲେଶ୍ୱର କଲେକ୍ଟର ରିଲିଫ୍ ଦେବାକୁ ରାଜକନିକାରେ ପହଞ୍ଚିଲେ କିନ୍ତୁ ସାହାଯ୍ୟ କରିପାରିଲେ ନାହିଁ । ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ ସମସ୍ତ ସାହାଯ୍ୟ କରିବେ ବୋଲି ସରକାରୀ ନିର୍ଦ୍ଦେଶ ହେଲା । ଯାହାଠାରେ ଧାନ ଥିଲା, ରାଜା ତାକୁ କିଣି ନେଇ ଲୋକଙ୍କୁ ସାହାଯ୍ୟ କରିବା ନାଁରେ ଚଢ଼ା ଦାମ୍‌ରେ ବିକିଲେ । ଦୁର୍ଭିକ୍ଷବେଳେ ଏହିପରି ଭାବରେ ରାଜା ଲୋକଙ୍କୁ ଶୋଷଣ କଲେ ।

ଏସବୁ ଦୃଷ୍ଟିରୁ ଜନ ଅସନ୍ତୋଷ ଆରମ୍ଭ ହେଲା । କୃଷକମାନେ ନିଜ ଜମିରୁ କିଛି ପାଇବା ଆଶା ନ ଦେଖି ଆନ୍ଦୋଳନ ପାଇଁ ପ୍ରସ୍ତୁତ ହେଲେ । ତେଣୁ କୃଷକ ଆନ୍ଦୋଳନ ରାଜାଙ୍କ ବିରୁଦ୍ଧରେ ମୁଣ୍ଡ ଟେକିଲା । ପ୍ରଜାମେଳିର ସୂତ୍ରପାତ ହେଲା ।

ରାଜା ଚାଷୀମାନଙ୍କୁ ଡାକି ଖଜଣା ବୃଦ୍ଧିରେ ଦସ୍ତଖତ ଦେବାକୁ ବାଧ କଲେ । ହେଲେ ଚାଷୀମାନେ ରୋକଠୋକ ମନା କରିଦେଲେ । ପ୍ରତିକ୍ରିୟା ପ୍ରକାଶ କରି ଛମୁକାର ଚାଷୀ ଓ କ୍ଷତିଗ୍ରସ୍ତ ଲୋକେ ଗୁପ୍ତ ବୈଠକ ପାଇଁ ରୁଣ୍ଡ ହେଲେ । ଏଥିରେ ବିସୁନି ଲୋକମାନଙ୍କ ଭିତରେ ଜାଗରଣ ସୃଷ୍ଟି କରିବା ପାଇଁ ମୁଖ୍ୟ ଭୂମିକା ନେଇଥିଲା । କନିକାର ବଡ଼ ବଡ଼ ଚାଷୀ ବିସୁନିର ପରିଚୟ ଏହି ଗୋପନ ସଭାରୁ ହିଁ ପାଇଥିଲେ ।

୧୯୨୧ ମଇ-ଜୁନ୍ ମାସରେ ବର୍ତ୍ତନୀ ଗାଁରେ ଦୀନବନ୍ଧୁ ଖଣ୍ଡାୟତ ରାୟଙ୍କ ଘରେ ବସିଥିଲା ଏକ ଗୁପ୍ତ ବୈଠକ । ରାଜାଙ୍କ ବିରୁଦ୍ଧରେ ବୈଠକରେ ବଛା ବଛା ଚାଷୀମାନେ ସରଗରମ ଆଲୋଚନା

କରୁଥାନ୍ତି । ଦୀନବନ୍ଧୁଙ୍କର ବିଶ୍ୱସ୍ତ ଅନୁଚର ବିସୁନି ଏ ସଭାରେ ଅବାଧ ପ୍ରବେଶ କରୁଥିଲା, କାରଣ ସେ ଥିଲା ବିପ୍ଳବୀଙ୍କ ମୁଖିଆ ।

ସଭାରେ ଥାଆନ୍ତି ତରାସ ଗାଁର ରଘୁ ସାମନ୍ତରାୟ, ତଇଳାର ସଦାନନ୍ଦ ସାମନ୍ତରାୟ, ଗୋବାଙ୍ଗର ଲମ୍ବୋଦର ମହାପାତ୍ର, ଆୟତନର ଭଗବାନ ସୂତାର (ମହାପାତ୍ର), ରାଉଳିଆର ଅଶ୍ୱିନୀ ପଲେଇ ଏବଂ ଆହୁରି ଅନେକ ଚାଷୀ ଓ ପ୍ରଜାନେତା । ବର୍ତ୍ତନୀର ଦୀନବନ୍ଧୁଙ୍କ ନିର୍ଦ୍ଦେଶରେ ବିସୁନି ସବୁ କଥା ବୁଝୁଥାଏ । ଖଜଣା ବୃଦ୍ଧି ଓ ରାଜାଙ୍କ ଅତ୍ୟାଚାର କଥାସବୁ ଆଲୋଚନା ହେଉଥାଏ ସେ ସଭାରେ । କଥା ପଡୁ ପଡୁ ରିଘାଗଡ଼ର ବିଧବାଟିର କଥା ପଡ଼ିଲା । କାଲିପରି ଲାଗୁଛି । ବାହା ହୋଇଥିଲା । ଶାଶୁବୁଢ଼ୀ କାଲୁଣୀ । ରାଜାଘର ପିଆଦା କ'ଣ ନାହିଁ କ'ଣ ପଚାରି ବୁଢ଼ୀକୁ ଦେଲା ଯେ ଧକ୍କାଟାଏ, ଚିତ୍‌କରି ପଡ଼ିଗଲା ବୁଢୀଟା ମଝି ଦାଣ୍ଡରେ । ବୋହୂ ଘରଭିତରୁ କ'ଣ କହିଦେବାରୁ ତାକୁ ବି ଧମକେଇ ଦିଆଗଲା । ଗାଁବାଲା ସବୁ ଦେଖି ଶୁଣି ଚୁପ୍ ରହିଲେ । ପଦେ କଥା ବି କହିଲେନି । ତା'ପରେ ଦଉିଆ ସର୍ଦ୍ଦାର ସାହାଯ୍ୟ କରିବ ବୋଲି କହି ରାଜାଙ୍କ କଚେରିକୁ ନେଇଗଲା । ଶାଶୁବୁଢ଼ୀ କହିଲା- ‘‘ପିଅନ ବାବୁ, ଏ ତୁମ ବୋହୂପରିକା । ଛାମୁଙ୍କ ପାଦତଳେ ପକାଇ ସବୁ କଥା କହିବ - ଆମ ମାନ ଇଜ୍ଜତ ରହିବ ।’’ ଦଉିଆ ସର୍ଦ୍ଦାର କେତେ ଘର ବୁଡ଼େଇଛି । ଏଇଟା ବା କି କଥା ! ବୋହୂ ଗଲା ଯେ ପୂରା ଆଠଦିନରେ ଗାଁକୁ ଫେରିଲା । ଦୁନିଆ ହୁଲ୍‌ସ୍ଥୁଲ୍ ହୋଇଗଲା । ବିଚାରୀ ଆଉ ଗାଁ ଦାଣ୍ଡକୁ ବାହାରି ପାରିଲାନି ।

ଏମିତି ଆଲୋଚନାରେ ରାଗି ଉଠୁଥିଲା ବିସୁନି ମହୁଆଙ୍କ । ରାଜାଙ୍କ ଅତ୍ୟାଚାରର ସୀମା ଟପିଯିବା କଥାରେ ବିସୁନି ଦାନ୍ତ କାମୁଡ଼ି ହେଉଥିଲା ।

ରାଜାଙ୍କ ବିରୁଦ୍ଧରେ ଗାଁ ଗାଁରେ ଗୁପ୍ତ ବୈଠକ ବସିଲା ଚାଷୀମାନଙ୍କର । ତେନ୍ତୁଳିକୋଳିର ବାସୁ ସେଠୀ ମଧ୍ୟ ସେଠିକାର ସଭାମାନଙ୍କରେ ବସି ସବୁ କଥା ଶୁଣେ । ବର୍ଣ୍ଣନୀ ଗାଁର ବିସୁନି ପରି ସେ ବି ବାହା କାମୁଡ଼ି ପକାଏ । ଉଭୟେ ପ୍ରଜାମାନଙ୍କ ଭିତରେ ଚାଲିଥିବା ଜନ ଅସନ୍ତୋଷକୁ ବଢ଼େଇବାରେ ଲାଗିଥାନ୍ତି ।

ସଭା ପରେ ସଭା ଚାଲିଲା । ଶେଷରେ କୃଷକ ଆନ୍ଦୋଳନ । ରାଜକନିକାର ରାଜବାଟୀ ହତା ଭିତରେ ଥିବା ଚନ୍ଦନ ପୋଖରୀର ପଶ୍ଚିମ ଦିଗ ପଡ଼ିଆରେ ସଭା ବସିଲା । ଛମୁକା, ପାଞ୍ଚମୁକା ଓ କେରଡ଼ାର ହଜାର ହଜାର ଲୋକ ଏଥିରେ ଯୋଗ ଦେଲେ । ସେ ଦିନ ଥାଏ ପୌଷ ପୂର୍ଣ୍ଣିମା । ପୁଷ୍ୟାଭିଷେକରେ ରାଜା ଉପସ୍ଥିତ ଥିବେ ଭାବି ଏ ସଭା ଡକାଯାଇଥିଲା । ମୁଖ୍ୟ ଉଦ୍ଦେଶ୍ୟ ଥିଲା ଖଜଣା ବୃଦ୍ଧିକୁ ରୋକିବା, ଚାଷୀକୁଳକୁ ଅତ୍ୟାଚାରରୁ ରକ୍ଷା କରିବା ନିମିତ୍ତ ରାଜାଙ୍କୁ ସିଧାସଳଖ ଭେଟିବା ଓ ଏହାର ପ୍ରତିକାର ପାଇଁ ବ୍ୟବସ୍ଥା କରିବା ନିମିତ୍ତ ଗୁହାରି ଜଣେଇବା । ଧାନ ଦର ବଢୁଛି । ଚାଷଜମିରୁ ଫସଲ ଆସୁ ନ ଆସୁ ଖଜଣା ବୃଦ୍ଧି ଚାଲିଛି । ଲୁଣା ବନ୍ଧ ନାଁରେ ଚାଲିଛି ଶୋଷଣ । ତା' ଛଡ଼ା ଏ ଖଜଣା ବଢ଼େଇବାକୁ ଇନ୍ଦ୍ରମଣି କିଏ ? ସେ କାହିଁକି ବନ୍ଦୋବସ୍ତ କରୁଛି ? ଏହିସବୁ ଥିଲା କୃଷକ ଆନ୍ଦୋଳନର ମୁଖ୍ୟ ଆଲୋଚନା ।

କାଗଜ ଆଣି ସମସ୍ତେ ଟିପସଇ ଦେଲେ । ହଜାର ହଜାର ଦସ୍ତଖତ ସଂଗ୍ରହ କରି ଲୋକେ ରାଜାଙ୍କ ପାଖକୁ ମାଡ଼ି ଚାଲିଲେ । ରାଜାଙ୍କ ପକ୍ଷରେ ଏପ୍ରକାର ସଭା ଏକ ଅପମାନଜନକ ବିଷୟ । ରାଜବାଟୀର ଛାତି ଉପରେ ରାଜାଙ୍କ ବିରୁଦ୍ଧରେ ପ୍ରଜାସଭା ଏକ ଅଭାବନୀୟ ଘଟଣା । ରାଗରେ ଫୁଲି ଉଠୁଥାନ୍ତି ରାଜା ।

ବାସୁ-ବିସୁନି ବଡ଼ ବଡ଼ ଚାଷୀ ଓ ପ୍ରଜାନେତାଙ୍କ ପାଖେ ପାଖେ ଥାଆନ୍ତି । ରାଜାଙ୍କ ବିରୁଦ୍ଧରେ ଲୋକଙ୍କୁ ମତାଉଥାନ୍ତି । ବୀର ଦର୍ପରେ ଆଗେଇ ଚାଲିଥାନ୍ତି ହଜାର ହଜାର ଲୋକଙ୍କ ଆଗରେ ରାଜାଙ୍କ ପାଖକୁ ।

ବାସୁ-ବିସୁନିଙ୍କ ଭିତରେ କେହି ଜଣେ ହେଲେ ବଡ଼ ଚାଷୀ ନୁହନ୍ତି । ହେଲେ ରାଜାଙ୍କର ଏ ଯେଉଁ କୋରଡ଼ାମାଡ଼, ସେଥିରେ



ସେମାନେ ଅତିଷ୍ଠ । ଘରେ ଘରେ ଲୁଗା କାଚିବା ହେଲା ବାସୁ ସେଠାର କାମ । ଲୁଗା କଚା ବାହାନାରେ ସେ ସବୁ ଘରେ ଏଇ ରାଜାଙ୍କ ଆଲୋଚନା କରି ଲୋକଙ୍କୁ ତତାଉଥାଏ । ଲୋକେ ବୁଝୁଥାନ୍ତି ଯେ, ବାସୁଆଟି ପରୋପକାରୀ । ତେଣୁ ସେ ସମସ୍ତଙ୍କର ପ୍ରିୟ ।

ବିସୁନି ବି ସେମିତି ଖଣ୍ଡାୟତ ରାୟ ପରିବାରର ବିଶ୍ୱସ୍ତ ଲୋକ ହୋଇଥିବାରୁ ବର୍ତ୍ତନୀ, ଯୋରଳ, ମେଘପୁର ଇତ୍ୟାଦି ଗାଁମାନଙ୍କରେ ତା'ର ପାରିଲାପଣକୁ ଭାରି ପ୍ରଶଂସା ।

ଏ ଦୁଇଜଣ ସଭାରେ ଥିବା ସମସ୍ତ ଲୋକଙ୍କ ଭିତରେ ବାରି ହୋଇପଡୁଥିଲେ ।

ରାଜାଙ୍କ ପାଖକୁ ଯାଇଥିବା ଲୋକେ ବିଫଳ ହୋଇ ଫେରିଲେ । ରାଜା କିଛି କଥା ଶୁଣିଲେ ନାହିଁ । ବରଂ କହିଲେ, ''ଖଜଣା ନ ଦେଲେ ଜମି ନିଲାମ ହେବ । ତେଣୁ ଆଗେ ଖଜଣା ଦେଲେ ଆପତ୍ତି ଶୁଣାଯିବ । ନ ହେଲେ ନାହିଁ ।''

ପ୍ରଜାକୁଳ ନିରାଶ ହୋଇ ଫେରିଲେ । ଶପଥ କଲେ ରାଜାଙ୍କୁ ଆଉ ଖଜଣା ଦେବେ ନାହିଁ । ତା' ପରେ ପରେ ପ୍ରଜା ଆନ୍ଦୋଳନ କ୍ଷିପ୍ର ଗତିରେ ମାଡ଼ି ଚାଲିଲା ଆଗକୁ ଆଗକୁ ।

ବାସୁ ଓ ବିସୁନିଙ୍କୁ ଦାୟିତ୍ୱ ଦିଆଗଲା ବିପ୍ଲବକୁ ତେଜିବା ପାଇଁ । ଦୁଇଜଣଯାକ କାମରେ ଧୁରନ୍ଧର । ଘରେ ପଛେ ଦାନା କନା ନ ଥାଉ, ହେଲେ ଲୋକଙ୍କ କାମକୁ ସେ ଦୁହେଁ ଆଗୁଆ । କେହି କାହାରିକୁ ଊଣା ନୁହନ୍ତି । କୃଷକ ଆନ୍ଦୋଳନକୁ ତେଜିବାକୁ ହେଲେ ସବୁ ଚାଷୀ ଏକାଠି ହେବା ଦରକାର ।

ବିସୁନି ମଜୁଆଳ ସବର୍ଣ୍ଣ ଇଲାକାରେ ଓ ବାସୁ ସେଠୀ ଅସବର୍ଣ୍ଣ ଜାତିର ନେତାରୂପେ ବଛାଗଲେ । ଦୁଇଜଣ ଯେମିତି କର୍ମଠ ସେମିତି ବିଶ୍ୱସ୍ତ । ସେମାନଙ୍କ ପୂର୍ବପୁରୁଷମାନେ ରାଜାଠାରୁ ଅନେକ ନିର୍ଯାତନା ଭୋଗିବାର କାହାଣୀ ସେମାନେ ଶୁଣିଛନ୍ତି । ନିଜ ଆଖିରେ ଦେଖିଛନ୍ତି କେମିତି ରାଜ ଅତ୍ୟାଚାର ବଢ଼ି ଚାଲିଛି ଦିନକୁ ଦିନ । ନିଜେ ବି ସେମାନେ ଭୁକ୍ତଭୋଗୀ ।

ସତେ ଯେମିତି ଦୁଇଗୁଣ ବଳରେ ମାତି ଉଠିଛି ପ୍ରଜାମଣ୍ଡଳୀ ! ସମସ୍ତେ ବାସୁ ଓ ବିସୁନିର କାମକୁ ଭୂରି ଭୂରି ପ୍ରଶଂସା କରୁଛନ୍ତି । ଲୋକଙ୍କ ଭିତରେ ଶତସିଂହର ସାହସ ଭରି ଦେଇଥାନ୍ତି ବାସୁ-ବିସୁନି । ନିଜ ଉପରେ ସେମାନଙ୍କର ଅଖଣ୍ଡ ବିଶ୍ୱାସ । ଲୋକେ ନ ମାତିଲେ, ରାଜାଙ୍କ ବିରୁଦ୍ଧରେ ଏକାଠି ନ ହେଲେ କନିକା ଦୁଃଖରେ ବୁଡ଼ିଯିବ । ପ୍ରଜାକୁଳ ନିଃଶେଷ ହୋଇଯିବେ କନିକା ମାଟିରୁ ।

**କନିକାରେ ଅସହଯୋଗ ଆନ୍ଦୋଳନର ପ୍ରଭାବ**

ବ୍ରିଟିଶ ସରକାରଙ୍କ ବିରୁଦ୍ଧରେ ସେତେବେଳେ ଲୋକଙ୍କ ମନରେ ଥାଏ ଘୃଣାଭାବ । ମହାତ୍ମାଗାନ୍ଧିଙ୍କ ଡାକରାରେ ୧୯୨୦ରୁ ୧୯୩୦ ମସିହା ପର୍ଯ୍ୟନ୍ତ ଅସହଯୋଗ ଆନ୍ଦୋଳନ ଚାଲିଲା ସାରା ଭାରତରେ । କୌଣସି କାମରେ, କୌଣସି କଥାରେ ଇଂରେଜଙ୍କୁ ସହଯୋଗ ନ କରିବାକୁ ନିଷ୍ପତ୍ତି ନିଆଯାଇଥାଏ । ଇଂରେଜ ସରକାରର ପ୍ରଜା ଦମନ ଲୀଳା ବିରୁଦ୍ଧରେ ଭାରତର ସବୁଆଡ଼େ ଜନମତ ଜାଗି ଉଠୁଥାଏ ।

୧୯୧୯ ମସିହାରେ ପଞ୍ଜାବର ଜାଲିଆନାୱାଲାବାଗ୍‌ରେ ହତ୍ୟାକାଣ୍ଡ ଘଟିଥାଏ । ଏଥିପାଇଁ ସାରା ଭାରତରେ ହୁଲ୍‌ସ୍ଥୁଲ୍

ପଡ଼ିଯାଇଥାଏ । ଲୋକମାନେ ଇଂରେଜ ଶାସକଙ୍କ ଉପରେ ରକ୍ତ ଚାଉଳ ଚୋବାଉ ଥାଆନ୍ତି । ୧୯୨୦ ମସିହାରେ କଂଗ୍ରେସର ଅଧିବେଶନ କଲିକତାଠାରେ ବସିଥିଲା । ପୁଣି ସେହି ବର୍ଷ ଡିସେମ୍ବର ମାସରେ ନାଗପୁରରେ ବସିଥିଲା । ସେଠାରେ ଗାନ୍ଧିଜୀଙ୍କ ପ୍ରସ୍ତାବକୁ ସମସ୍ତେ ଗ୍ରହଣ କଲେ ।

ଗାନ୍ଧିଜୀଙ୍କ ଡାକରାରେ ବିଦେଶୀ ଲୁଗା ବର୍ଜନ, ବିଦେଶୀ ଦ୍ରବ୍ୟ ବର୍ଜନ, ସ୍ୱଦେଶୀ ବସ୍ତ୍ର ଓ ସ୍ୱଦେଶପ୍ରୀତିପାଇଁ ଲୋକମାନେ ପ୍ରସ୍ତୁତ ହେଉଥାନ୍ତି । କଂଗ୍ରେସ ଅଫିସ୍‌ସବୁ ଓଡ଼ିଶାର ସ୍ଥାନେ ସ୍ଥାନେ ଖୋଲାଗଲା ।

ଅସହଯୋଗ ଆନ୍ଦୋଳନର ବାର୍ତ୍ତା ନେଇ ଆଳି ସଭା ସାରି ରାମଦାସ ବାବାଜୀ ପହଞ୍ଚିଲେ ପ୍ରଥମେ କନିକାରେ । ସ୍ୱରାଜ୍ୟ ଗୀତ ଗାଇ ଗାଇ ଦଳେ ସଂକୀର୍ତ୍ତନ ଦଳଧରି କନିକା ରାଜବାଟୀରେ ସଭା କରିବା ପାଇଁ ଠିକ୍ କଲେ ।

ସେଦିନ କନିକା ଅଞ୍ଚଳରେ ନାହିଁ ନ ଥିବା ଲୋକ ରୁଣ୍ଡ ହୋଇଥାନ୍ତି କନିକା ହାଇସ୍କୁଲ ପାଖ ପଡ଼ିଆରେ । ଛମୁକାର ହଜାର ହଜାର ଭେଣ୍ଡିଆ, ବୁଢ଼ା ବିପ୍ଳବୀ ସବୁ ରୁଣ୍ଡ ହେଲେ ବାସୁ-ବିସୁନିଙ୍କ ତତ୍ପରତାରେ । ସେମାନେ ଆଗଭର ହୋଇ ଚାଲିଥାନ୍ତି ସଭାସ୍ଥଳକୁ । ରାମଦାସ ବାବାଜୀ କନିକାରାଜାଙ୍କୁ ତିଳେ ହେଲେ ଡରୁ ନ ଥାନ୍ତି । ନିଆଁଗୁଳାପରି ଭାଷଣମାନ ଦେଉଥାନ୍ତି ରାଜାଙ୍କ ବିରୁଦ୍ଧରେ । ବ୍ରିଟିଶ୍ ସରକାର ଓ କନିକାରାଜା ଗୋଟିଏ ଲାଉର ମଞ୍ଜି ବୋଲି କହୁଥାନ୍ତି ।

ରାଜା ମହାରାଜାଙ୍କୁ ଜବତ୍ ନ କଲେ ବ୍ରିଟିଶ୍ ଜବତ୍ ହେବ ନାହିଁ ବୋଲି ସେ ଲୋକଙ୍କୁ ବୁଝାଉଥାନ୍ତି ।

ଅସହଯୋଗ ଆନ୍ଦୋଳନକୁ ବଢ଼େଇବା ପାଇଁ ସେ କନିକାବାସୀଙ୍କୁ ନିବେଦନ କଲେ । କହିଲେ ଯେ, ''କନିକା ପ୍ରଜା ରାଜାଙ୍କ ସହ ସମସ୍ତ ସମ୍ପର୍କ ଛିନ୍ନ କରନ୍ତୁ । ଏହା ନ ହେଲେ ବ୍ରିଟିଶ୍ ସରକାରର ଚାମଚାଭାବେ ରାଜା ନିଜ ସ୍ୱାର୍ଥ ହାସଲ କରି ଲୋକଙ୍କୁ ଜୀବନସାରା ଏମିତି କଷ୍ଟ ଦେଉଥିବେ ।

କନିକାରେ ବ୍ରିଟିଶ୍ ସରକାର ଓ ରାଜା ଗୋଟିଏ ମାଆର ଯାଆଁଳା ଭାଇ ପରି । ସେମାନେ ଯେମିତି ଆଉ ଆଗକୁ ବଢ଼ି ନ ପାରିବେ, ସେଥିପାଇଁ ବ୍ରିଟିଶ୍ ସରକାର ଓ ରାଜାଙ୍କୁ ମଧ୍ୟ ସବୁ କାମରେ ଅସହଯୋଗ କରନ୍ତୁ । ରାଜାଙ୍କ କଚେରି କୁ କେହି ଯାଆନ୍ତୁ ନାହିଁ । ରାଜାଙ୍କ ସ୍କୁଲରେ କେହି ଗୋଲାମି ପାଠ ପଢ଼ନ୍ତୁ ନାହିଁ । ସ୍ୱରାଜ୍ୟ ଡାକରାକୁ ଗାଁ ଗାଁରେ ପ୍ରଚାର କରନ୍ତୁ । ଘରେ ଘରେ ଅରଟ ଚାଲୁ ରଖନ୍ତୁ । କାଟି ପିନ୍ଧନ୍ତୁ ଓ କୁଟି ଖାଆନ୍ତୁ ।'' ମହାତ୍ମାଗାନ୍ଧିଙ୍କ ଜୟ ଜୟ ଗାନରେ କନିକା ଆକାଶ ଫାଟି ପଡୁଥାଏ । ରାମଦାସ ବାବାଜୀ ଚେତେଇ ଦେଲେ, ''ସ୍ୱରାଜ୍ୟ ଅଲବତ୍ ଆସିବ, ଯଦି ଆପଣମାନେ ସମସ୍ତେ ଜାଗି ଉଠିବେ ।''

ସତକୁ ସତ ସେଦିନ କରତାଳି ଧ୍ୱନି ଓ ମହାତ୍ମାଗାନ୍ଧି କୀ ଜୟ ଧ୍ୱନିରେ କନିକା ଆକାଶ କମ୍ପିଗଲା । ଲୋକଙ୍କ ମନରେ ଲକ୍ଷେ ଗୁଣ ଉତ୍ସାହ ଜାଗିଉଠିଲା । ରାଜାଙ୍କ ବିରୁଦ୍ଧରେ କେହି ଏଯାଏଁ କିଛି କହି ପାରୁ ନ ଥିଲେ । ଏବେ ବଳପାଇ ଦୁଇଗୁଣ ସାହସରେ ମାତି ଉଠିଲେ ।

ବର୍ତ୍ତନୀ ଗାଁର ଦୀନବନ୍ଧୁ ଖଣ୍ଡାୟତ ରାୟଙ୍କ ନିର୍ଦ୍ଦେଶରେ ବିସୁନି ଗାଁ ଗାଁ ବୁଲି ଗାନ୍ଧିଙ୍କ କଥା କହି ଚାଲିଲା । ଦମ୍ଭ ଓ ସାହସର ସହ ସେ ପ୍ରଜାମଣ୍ଡଳୀକୁ ଏକଜୁଟ୍ କରିବାରେ ଲାଗିଲା । ବାସୁ ସେଠୀ ମଧ୍ୟ କନିକା ଅଞ୍ଚଳରେ ଥିବା ସମସ୍ତ ଅସବର୍ଣ୍ଣ ଓ ଅତ୍ୟାଚାରିତ ଭାଇମାନଙ୍କୁ ଏକଜୁଟ୍ ହେବାପାଇଁ ବୁଲି ବୁଲି କହିଲା । ପାଠ ନ ପଢ଼ିଥିଲେ କ'ଣ ହେବ, ସେ ପ୍ରଜାମେଳି ସଭା ଓ ରାମଦାସ ବାବାଜୀଙ୍କ ଭାଷଣରୁ ଯାହା ଶୁଣିଥିଲା - ସବୁ ମନେ ରଖିଥିଲା । ତାହାକୁ ହିଁ ସମସ୍ତଙ୍କୁ କହି ଚେତେଇ ଦେଉଥିଲା ।

ରାମଦାସ ବାବାଜୀଙ୍କ ପରେ ପରେ ରାଜକନିକା ହାଇସ୍କୁଲରେ ଏକ ଛାତ୍ରସଭା ହେଲା । ସେଥିରେ ଛାତ୍ରମାନେ ଜାତୀୟ ଆନ୍ଦୋଳନରେ ଭାଗ ନେବାକୁ ତିଆର୍ ହେଲେ । କିନ୍ତୁ ରାଜକର୍ମଚାରୀମାନେ ସେମାନଙ୍କ ପିଲାଙ୍କୁ ସ୍କୁଲକୁ ନ ଛାଡ଼ି ଅଟକାଇ ଦେଲେ । ତଥାପି ଛମୁକା ଆୟତନର ଶିକ୍ଷକ ଜୟରାମ ରାୟ ନିଜ ଚାକିରିରୁ ଇସ୍ତଫା ଦେଲେ । ପାଞ୍ଚମୁକାର ଭଗବାନ ଦୀକ୍ଷିତ୍, ଗୟାଧର ସାମଲ, ଶଙ୍ଖାଳି ସାମଲ, କୈଳାସ୍ ସାମଲ, ସନ୍ଥ ବେହେରା ଓ ବନମାଳୀ ନାୟକ ଇତ୍ୟାଦି ଛାତ୍ର ସ୍କୁଲ ଛାଡ଼ି ଅସହଯୋଗ ଆନ୍ଦୋଳନରେ ଝାସ ଦେଲେ ।

**କନିକାରେ କଂଗ୍ରେସ ଅଫିସ**

ରାମଦାସ ବାବାଜୀ ଗିରଫ ହେଲା ପରେ କଂଗ୍ରେସ ନେତାମାନେ ସବୁ ପହଞ୍ଚିଲେ କନିକାରେ । ସେତେବେଳେ ବିଭିନ୍ନ କଲେଜ ଛାତ୍ରମାନେ ମଧ୍ୟ ପାଠ ବର୍ଜନ କରିଥାନ୍ତି । ରେଭେନ୍‌ସା

କଲେଜରୁ ହରେକୃଷ୍ଣ ମହତାବଙ୍କ ସହ ଅନ୍ୟମାନେ ବି କଲେଜ ଛାଡ଼ି ଅସହଯୋଗ ଆନ୍ଦୋଳନରେ ସକ୍ରିୟ ଭୂମିକା ନେଇଥାନ୍ତି ।

ଉତ୍କଳ ପ୍ରଦେଶ କଂଗ୍ରେସ କମିଟି ତରଫରୁ ଭାଗୀରଥି ମହାପାତ୍ର, ଯଦୁମଣି ମଙ୍ଗରାଜ ଓ ଅଟଳ ବିହାରୀ ଆଚାର୍ଯ୍ୟ ପ୍ରଭୃତି ମିଶି ଚାନ୍ଦବାଲି କଣ୍ଟପଡ଼ା ରାସ୍ତାର ପୂର୍ଣ୍ଣାନନ୍ଦ ପାଣିଙ୍କ ଘର ଭଡ଼ାନେଇ ରାସ୍ତା କଡ଼ରେ କଂଗ୍ରେସ ଅଫିସ୍ 'ସ୍ୱରାଜ୍ୟ ଆଶ୍ରମ' ଖୋଲିଲେ । ରାସ୍ତାକଡ଼ରେ ଥିବା ବରଗଛରେ ତ୍ରିରଙ୍ଗା ପତାକା ମାରି ତାକୁ 'ଗାନ୍ଧି ବଟ' ବୋଲି କହିଲେ । ଅଫିସ୍ ଦାୟିତ୍ୱରେ ତିଗିରିଆ କଂଗ୍ରେସକର୍ମୀ ମଧୁସୂଦନ ପଟ୍ଟନାୟକ ରହିଲେ ।

ଯଦୁମଣି ମଙ୍ଗରାଜ ମଧ୍ୟ ଗରମାଗରମ ଭାଷଣ ଦେଇ ଲୋକଙ୍କ ମନରୁ ଭୟ ଦୂର କଲେ । କହିଲେ, ''ଅନ୍ୟଆଡ଼େ ସିନା ଲୋକେ ଗୋଟେ ଅଧେ କଷ୍ଟ ଭୋଗୁଛନ୍ତି, କିନ୍ତୁ କନିକାର ଲୋକେ ସବୁ କଷ୍ଟ ଏକାଠି ଭୋଗୁଛନ୍ତି । ତା' ସାଙ୍ଗକୁ ଜରୁଆ, ଧୋଇଆ, ମରୁଡ଼ିଆ, ଅନ୍ନକଷ୍ଟିଆ ସବୁବେଳେ ଏକାବେଳେକେ ଏଇ କନିକାର ଘରେ ଘରେ ଅତିଥି । କନିକାବାସୀଙ୍କୁ ଲୁଟ୍‌କରି ନଅର ତୋଳା ଚାଲିଛି । ତମେସବୁ ଉଠ । ଏ ଲୁଟ୍‌ତରାଜ ଆଉ ଚାଲିବ ନାହିଁ ।''

ହଜାର ହଜାର ପ୍ରଜା ତାଳି ବୃଷ୍ଟି କଲେ । ଶିକ୍ଷକ ଜୟରାମ ରାୟ, ଆନନ୍ଦ ଚନ୍ଦ୍ର ଜେନା ଓ ଜୟନଗରର ଉପେନ୍ଦ୍ର ସୁବୁଦ୍ଧି ରାୟ ପ୍ରଭୃତି ଭାଷଣ ଦେଇ କନିକାର ପ୍ରଜାକୁଳକୁ ବହୁ ଗୁଣରେ ସାହସ ଦେଲେ । ବାସୁ-ବିସୁନି ମଧ୍ୟ ଏଥିରେ ସମ୍ପୂର୍ଣ୍ଣଭାବେ ଜଡ଼ିତ ହୋଇଗଲେ ! ସେମାନେ ଖାଲି ରକ୍ତଚାଉଳ ଚୋବେଇ ହେଲେ ।

ତା'ପରେ ଚାଲିଲା କଂଗ୍ରେସ ସଭ୍ୟ ସଂଗ୍ରହ । ଅସହଯୋଗ ଆନ୍ଦୋଳନ ପାଇଁ କଂଗ୍ରେସର ସଭ୍ୟ ସଂଖ୍ୟା ବେଶି ଦରକାର । ଲୋକମାନେ ନିଜକୁ କଂଗ୍ରେସରେ ସାମିଲ୍ କରିବାକୁ ଲାଗିଲେ । ୧୯୨୧-୨୨ରେ ଓଡ଼ିଶାର ମୋଟ୍ ୨୦ ହଜାର କଂଗ୍ରେସ ସଭ୍ୟ ହୋଇଥିବାବେଳେ କେବଳ ଛମୁକାରୁ ୪ ହଜାର ସଭ୍ୟ ସାମିଲ୍ ହେଲେ । ବାସୁ-ବିସୁନିଙ୍କ ପ୍ରରୋଚନାରେ ମଧ୍ୟ ଅନେକ ଅଶିକ୍ଷିତ ଲୋକ ଓ ଅଛୁଆଁ ଜାତିର ଲୋକ କଂଗ୍ରେସରେ ମିଶିଲେ । ବାସୁ-ବିସୁନି ଏକ ନମ୍ବର କଂଗ୍ରେସ କର୍ମୀଭାବେ କାମ କଲେ ଛମୁକା ଅଞ୍ଚଳରେ ।

ଏହି ସମୟରେ କନିକା ରାଜବାଟୀରେ ହିସାବ ରକ୍ଷକଭାବେ ଚାକିରି ପାଇଥିବା ପାଞ୍ଚମୁକାର ବିପ୍ଳବୀ ପ୍ରଜାନେତା ଚକ୍ରଧର ବେହେରା ନିଜ ଚାକିରିରୁ ଇସ୍ତଫା ଦେବା ଘଟଣା ରାଜାଙ୍କୁ ଏକ ଶକ୍ତ ଧକ୍କା ଦେଲା ।

କନିକା ପ୍ରଜାମେଳି ରାଜାଙ୍କ ଉଦ୍ଦେଶ୍ୟରେ ଥିଲେ ମଧ୍ୟ ଅସହଯୋଗ ଆନ୍ଦୋଳନ ଡାକରାରେ ସମସ୍ତେ ଏକଜୁଟ୍ ହେଲେ । କନିକା ପ୍ରଜାମାନେ ଭରସା ପାଇଲେ । ତାଙ୍କ ସାହସ ବଢ଼ିଗଲା । ବାହାର ସାହାଯ୍ୟ ପାଇ ସେମାନଙ୍କର ବିପ୍ଳବୀ ମନୋଭାବ ଦ୍ୱିଗୁଣିତ ହେଲା । କନିକା ଆନ୍ଦୋଳନ ରାଜାଭିତ୍ତିକ ହେଲେ ବି ତାହା ସମ୍ପୂର୍ଣ୍ଣଭାବେ ଅସହଯୋଗ ଆନ୍ଦୋଳନର ସମର୍ଥକ ଥିଲା । ତେଣୁ ପ୍ରଜାମେଳି ନାଁରେ ଅସହଯୋଗ ଆନ୍ଦୋଳନ ଚାଲୁ ରହିଲା ସାରା କନିକା ଅଞ୍ଚଳରେ ।

ଚାରିଆଡ଼େ ଚାଲିଲା ପ୍ରଜାସଭା । ଗାଁ ଗାଁରେ ଖଜଣା ଦେବା ବନ୍ଦ କରି ଦିଆଗଲା । ପୁରୁଣା ହିସାବରେ ଲୋକେ କେନ୍ଦ୍ରାପଡ଼ା

ସବ୍‌ଟ୍ରେଜେରୀରେ ଖଜଣା ଦେଇ ଦେଲେ । ରାଜାଙ୍କ ଭାଉ ଆଉ କାମ କଲା ନାହିଁ । ରାଜା କ୍ଷୁବ୍‌ଧ ହେଲେ ।

ଏହାବ୍ୟତୀତ ଅସହଯୋଗ ଆନ୍ଦୋଳନଯୋଗୁଁ କନିକାର ଗାଁ ଗାଁରେ ଅରଟ ଚାଲିଲା । ସ୍ୱଦେଶୀ ଖଦିର ପ୍ରସାର ହେଲା । ଲୋକେ ବିଦେଶୀ ଛାଡ଼ି ସ୍ୱଦେଶୀ ଦ୍ରବ୍ୟପ୍ରତି ମୁହାଁଇଲେ । ଅହିଂସା ନୀତିରେ ସବୁ କାମ ଆଗେଇ ଚାଲିଲା । କୌଣସି ହିଂସାତ୍ମକ କାର୍ଯ୍ୟପନ୍ଥା ହାତକୁ ନିଆଗଲା ନାହିଁ । କନିକାର ଅସହଯୋଗ ଆନ୍ଦୋଳନ ପ୍ରଭାବରେ ସ୍କୁଲ, କଲେଜ, କଚେରି ଠିକ୍‌ଭାବେ ଚାଲିପାରିଲା ନାହିଁ । ରାଜାଙ୍କ ଆଦେଶରେ ରାଜକନିକା ହାଇସ୍କୁଲକୁ ବନ୍ଦ କରି ଦିଆଗଲା । ଛାତ୍ର ଧର୍ମଘଟ ଓ ପ୍ରଜାସଭା ମାଧ୍ୟମରେ ରାଜା ଏବଂ ବ୍ରିଟିଶ୍ ସରକାରଙ୍କୁ ବିରୋଧ କରାଗଲା ।

## ରାଜକର୍ମଚାରୀଙ୍କ ଉପରେ ପ୍ରଜାଙ୍କ ଚଢ଼ାଉ

୧୯୨୨ ମସିହା ଅପ୍ରେଲ୍ ମାସର ଘଟଣା । କେନ୍ଦ୍ରାପଡ଼ା ଅଦାଲତ ପିଅନ କେତେଜଣ କନିକା ରାଜକର୍ମଚାରୀଙ୍କୁ ଧରି ଛମୁକାର ପତରପୁର ବାସିନ୍ଦା ପଦନ ଜେନାଙ୍କ ଘର କୋରକ କରିବା ପାଇଁ ଯାଇ ପହଞ୍ଚିଥିଲେ ଏକ ମିଛ ଆଳ ନେଇ । ପତରପୁର ଆଖପାଖ ଗାଁ ଡାଏଣୀଗିରି, କାଟଣା, ଜୟକୁଣ୍ଡା, ଗାରଡ଼ପୁର, ଖଣ୍ଡେଇତା ଓ ପାଣ୍ଡରକୁଳି ପ୍ରଭୃତି ଗାଁର ପ୍ରଜା ସଂଗଠନ ଖୁବ୍ ଦୃଢ଼ ଥାଏ । ପଦନ ଜେନା ଜଣେ ଚାଷୀ ନେତା ଥିଲେ । ସେମାନେ ସମସ୍ତେ ମିଳି କୋରକ କରାଇ ଦେଲେ ନାହିଁ । ମୁଖ୍ୟ ପିଅନକୁ କବାଟ ପଟାରେ ଶୁଆଇ ଦେଇ କେନ୍ଦ୍ରାପଡ଼ା ଏସ୍. ଡ଼ି. ଓ.ଙ୍କ ନିକଟରେ ପହଞ୍ଚାଇ ଦିଆଗଲା ।

ଏସ୍. ଡ଼ି. ଓ. ରାଗିଉଠି ପ୍ରଜା ଆନ୍ଦୋଳନକୁ ଚାପି ଦେବାପାଇଁ ପ୍ରଜାନେତାଙ୍କୁ ଗିରଫ କରିବାକୁ ନିର୍ଦ୍ଦେଶ ଦେଲେ । ତେଣୁ ପ୍ରଜାଙ୍କ ଭିତରେ ପ୍ରବଳ କ୍ରୋଧ ଓ ଉତ୍ତେଜନା ସୃଷ୍ଟି ହେଲା । ପ୍ରଜାସଭା ନିଷ୍ପତ୍ତି ଅନୁସାରେ କାହାରିକୁ ଗିରଫ କରେଇ ନ ଦେବା ପାଇଁ ସମସ୍ତେ ଜାଗ୍ରତ ରହିଲେ । ଆୟତନଠାରୁ ବର୍ତ୍ତନୀ ପର୍ଯ୍ୟନ୍ତ ପ୍ରତି ଗାଁରୁ ଶହ ଶହ ଯୁବକର୍ମୀ ଖଣ୍ଡେଇତାଠାରେ ଠୁଳ ହେବାପାଇଁ ବିପ୍ଳବୀ ଶିକ୍ଷକ ଆନନ୍ଦ ଚନ୍ଦ୍ର ଜେନାଙ୍କୁ ଦାୟିତ୍ୱ ଦିଆଗଲା । ଆନନ୍ଦ ମାଷ୍ଟ୍ରେଙ୍କ ନିର୍ଦ୍ଦେଶାନୁକ୍ରମେ ବାସୁ-ବିସୁନି ଅଗ୍ରଣୀ ଭୂମିକା ନେଲେ । ଅପ୍ରେଲ୍ ୨୧ ତାରିଖ ସକାଳୁ ପୋଲିସ୍ ପତରପୁର ଅଭିମୁଖେ ଯାଇ ଅଭିଯୁକ୍ତ ଆସାମୀକୁ ଗିରଫ କଲେ । ଖଣ୍ଡେଇତା ଗାଁରେ ସେତେବେଳକୁ ଦୁଇ ହଜାର ଲୋକ ରୁଣ୍ଡ ହୋଇ ସାରିଥାନ୍ତି । ସିପାହୀମାନେ ଗିରଫ ପ୍ରଜାନେତାଙ୍କୁ ନେଇ ଜୋଡ଼ ପାରି ହେବା ଦେଖି ଉତ୍ତ୍ୟକ୍ତ ଜନତା ପୋଲିସ୍ ଉପରେ ଝାମ୍ପ ଦେଇ ଗିରଫ ହୋଇଥିବା ପ୍ରଜାନେତାଙ୍କୁ ଛଡ଼େଇ ଆଣିଲେ । ତେଣୁ ପୋଲିସ୍ କର୍ମଚାରୀମାନେ ଭୟରେ ରାଜକନିକା ମୁକାମ ଛାଡ଼ି ପଳେଇ ଗଲେ । ଏହା ଥିଲା କନିକା ପ୍ରଜା ଆନ୍ଦୋଳନରେ ଏକ ଚାଞ୍ଚଲ୍ୟକର ଘଟଣା ।

ଇଚ୍ଛା କରିଥିଲେ ପ୍ରଜାମାନେ ପୋଲିସ୍‌ର ଅଧିକ କ୍ଷତି କରି ପାରିଥାନ୍ତେ । କିନ୍ତୁ ଏହାକୁ ପ୍ରଜାସଭା ବାରଣ କଲା । କନିକାରାଜା ସେଦିନ ଓଡ଼ିଶାରେ ନ ଥିଲେ । ଓଡ଼ିଶା-ବିହାର ଏକ୍‌ଜିକ୍ୟୁଟିଭ୍ କାଉନ୍‌ସିଲ୍‌ର ସଭ୍ୟ ହେତୁ ସେ ଥିଲେ ପାଟନାରେ ।

ରାଜକର୍ମଚାରୀ ପୋଲିସ୍ ସୁପରିଟେଣ୍ଡେଣ୍ଟଙ୍କ ନିକଟକୁ ଏକ ମିଥ୍ୟା ଟେଲିଗ୍ରାମ୍ ଦେଇ ଜଣେଇଲେ ଯେ, ମେଳିଆମାନେ ରାଜ

ନଅର ଆକ୍ରମଣ କରି ଭାଙ୍ଗିଦେବାକୁ ହଜାର ହଜାର ସଂଖ୍ୟାରେ ରୁଣ୍ଡ ହୋଇଛନ୍ତି । ତେଣୁ ଅପ୍ରେଲ୍ ୨୨ ତାରିଖ ସୁଦ୍ଧା ବହୁତ ବନ୍ଧୁକଧାରୀ ପୋଲିସ୍ ଫଉଜ ଧରି ଏସ୍. ପି. ଶ୍ରୀକୃଷ୍ଣ ମହାପାତ୍ର ରାଜକନିକାରେ ପହଞ୍ଚି ସାରିଥିଲେ । କନିକାର ପ୍ରଜାମେଳିକୁ ନିଃଶେଷ କରିଦେବାର ଅଭିପ୍ରାୟ ନେଇ କଟକ ଏସ୍. ପି. ପର୍ଯ୍ୟାପ୍ତ ପୋଲିସ୍ ଫଉଜକୁ ମୁତୟନ କରି ରଖିଲେ ଛମୁକା ଅଞ୍ଚଳରେ ।

**ସହିଦ୍ ଦିବସର ପୂର୍ବ ପ୍ରସ୍ତୁତି**

୧୯୨୨ ମସିହା ଅପ୍ରେଲ୍ ୨୦ ତାରିଖରେ ପ୍ରଜାସଭା ଡାକରାରେ ଯେଭଳି ରାଜକର୍ମଚାରୀଙ୍କ ଉପରେ ଚଢ଼ାଉ ହେଲା, ସେଥିରେ ପ୍ରଜାମାନେ ଅଧିକ ଉତ୍ତେଜିତ ହୋଇପଡ଼ିଲେ । ତାଙ୍କ ଭିତରେ ଅଧିକରୁ ଅଧିକ ଉତ୍ସାହ ବଢ଼ିଗଲା । ଦୀର୍ଘଦିନଧରି ଯେଉଁ ରାଗ ଥିଲା, ସେଦିନ କିଛିଟା ମେଣ୍ଟିଥିଲା ଲୋକଙ୍କର । ରାଜ ଇଲାକାରୁ ପୋଲିସ୍ ହାତରୁ ଗିରଫ ଆସାମୀକୁ ଛଡ଼େଇନେବା କମ୍ ବଡ଼ କଥା ନୁହେଁ ସେତେବେଳେ । ଲୋକେ ଏଥର ସ୍ଥିର କଲେ ଯେ, ରାଜାଙ୍କ ଅନ୍ୟାୟକୁ ଖୋଲାଖୋଲି ବିରୋଧ କରିବେ । ତେଣୁ ସେମାନେ ନିଜକୁ ପ୍ରସ୍ତୁତ କରି ରଖିଲେ ।

ହଠାତ୍ ଜନରବ ଉଠିଲା ଯେ, ୨୧ ତାରିଖ ରାତିରେ ପ୍ରଜାମେଳିକୁ ଦମନ କରିବାପାଇଁ ଘର ଘର ଲୁଟ୍ କରାଯିବ । ଝିଅ-ବୋହୂମାନଙ୍କ ଇଜ୍ଜତ ଅପହରଣ କରାଯିବ । ଏଥିରେ ସମଗ୍ର ଛମୁକା ଅଞ୍ଚଳ ତାତି ଉଠିଲା । ଅପ୍ରେଲ୍ ୨୨ ତାରିଖ ରାଜାଙ୍କ ନଅରତଳି ଅଞ୍ଚଳରେ ସବୁ ବସ୍ତିରେ ରାଜା ପକ୍ଷ ଲୋକଙ୍କ ତରଫରୁ କଥାଟିଏ ପ୍ରଚାର

କରି ଦିଆଗଲା । ରାଜାଙ୍କ ନିର୍ଦ୍ଦେଶ ଆସନ୍ତାକାଲି ଅର୍ଥାତ୍ ଅପ୍ରେଲ୍ ୨୩ ତାରିଖ ସକାଳୁ ସବୁ ଘରୁ ଜଣେ ଲେଖାଏଁ ଲୋକ ରାଜାଙ୍କ ଗୁଣ୍ଡାବାହିନୀ-ସହ ମେଳି ଦମନ ପାଇଁ ଯିବେ । ଯିଏ ଏଥିରୁ ବାଦ୍ ପଡ଼ିବ ସିଏ କଠୋର ଦଣ୍ଡରେ ଦଣ୍ଡିତ ହେବ ।

ରୋଗୀ ଖୋଜୁଥିଲା ଯାହା, ବଇଦ ବତେଇଲା ତାହା । ବିଭିନ୍ନ ଅପକର୍ମରେ ଲିପ୍ତ ଥିବା ଲୋକେ ଏହାକୁ ସୁବର୍ଣ୍ଣ ସୁଯୋଗ ବୋଲି ବିଚାରିଲେ । ରାଜାଙ୍କୁ ଖୁସି କରି ବାହାବା ନେବାକୁ ସେମାନେ ସବୁବେଳେ ଆଗଭର । ଭାବିଲେ, ଏଇ ମଉକାରେ ଘରେ ଘରେ ପଶି କାହାର ସୁନାମୋହର, ସୁନାହାର, ଟଙ୍କା ପଇସା ନେଇ ଆସିବା ସହଜ ହେବ । ଆଉ କେହି କେହି ଭାବିଲେ ମନ ଭିତରେ ଥିବା କୁପ୍ରବୃତ୍ତିକୁ ମେଣ୍ଟେଇବେ । ଏଥିରେ ହାନି ନାହିଁ ବରଂ ଲାଭ । ସବୁ କଥା ରାଜାଙ୍କ ନାଁରେ ଯିବ ।

ପ୍ରଜାସଭା କିମ୍ବା ପ୍ରଜାମେଳିରେ ସଂପୃକ୍ତ ନ ଥିବା ରାଜାଙ୍କ ଚାମଚା ଦଳ ଭାବିଲେ ଏଥର ଛମୁକାଣ ପ୍ରଜାନେତାମାନେ ଉଚିତ ଶିକ୍ଷା ପାଇବେ । ଛମୁକାଣ ୩୦/୪୦ ହଜାର ମେଳିଆଙ୍କ ଭିତରୁ ପ୍ରାୟ ୪-୫ ହଜାର୍ ଲୋକ ରାଜାଙ୍କ ଗୁଣ୍ଡାବାହିନୀ ସହ ସାମିଲ୍ ହୋଇଗଲେ । ବାକି ୩ ଭାଗରୁ ଅଧିକ ଲୋକ ପ୍ରଜାମେଳିରେ ଜଡ଼ିତ ଥାଆନ୍ତି ।

ପ୍ରଜାମାନଙ୍କୁ ହଠାତ୍ କିଛି ବୁଦ୍ଧି ବାଟ ଦେଖାଗଲା ନାହିଁ । ସେମାନେ ସାମାନ୍ୟ ଡରିଗଲେ । କାରଣ କଂଗ୍ରେସଲୋକେ ଉତ୍ତର ପ୍ରଦେଶର ଚୌରିଚୌରା ଘଟଣା ପରେ ମହାତ୍ମାଗାନ୍ଧି କି ନିଷ୍ପତ୍ତି ନେବେ

ଜାଣିବା ପାଇଁ, ରାଜକନିକାରୁ ଚାଲିଯାଇ କଟକରେ ଥାଆନ୍ତି । ଏଣୁ ଲୋକଙ୍କ ସାହସ ଟିକିଏ ଦବି ଯାଇଥାଏ । କଂଗ୍ରେସଲୋକ ଥିଲେ ହୁଏତ ଲୋକମାନଙ୍କ ସାହସ ବଢ଼ି ଯାଇଥାଆନ୍ତା । ଦ୍ୱିତୀୟ କାରଣ ହେଲା, ପୋଲିସ୍ ଫୌଜର ବନ୍ଧୁକ ଗୁଳିକୁ କେମିତି ଲାଠି, ମୁଦ୍‌ଗରରେ ସାମ୍ନା କରାଯାଇପାରିବ ? ତେଣୁ ପ୍ରଜାନେତାମାନେ ଅଡୁଆରେ ପଡ଼ି ଯାଇଥାଆନ୍ତି ।

ଯେଉଁ ବଡ଼ ଚାଷୀମାନେ କୃଷକ ଆନ୍ଦୋଳନରେ ଭାଗ ନେଇ ପ୍ରଜାମେଳିକୁ ଚଳେଇ ଆଣୁଥିଲେ, ସେମାନେ କଂଗ୍ରେସଲୋକ ଚାଲିଯିବା ଦେଖି ଛାନିଆ ହୋଇପଡ଼ିଲେ । ତେଣୁ ସଂଗ୍ରାମର ଦାୟିତ୍ୱ ପଡ଼ିଲା ଛୋଟକାଟିଆ ଗ୍ରାମୀଣ ସୈନିକଙ୍କ ଉପରେ ।

ରାଜାଙ୍କ ନିର୍ଦ୍ଦେଶରେ ରାଜକର୍ମଚାରୀ, ରାଜାଙ୍କ ଗୁଣ୍ଡା ଓ ଏସ୍.ପି.ଙ୍କ ପୋଲିସ୍ ବାହିନୀ ଏପ୍ରିଲ୍ ୨୩ ତାରିଖରେ ଥିବା ପ୍ରଜାମେଳିକୁ ଦମନ କରିବା କଥା ଶୁଣି ଛମୁକା ତା'ର ମୁକାବିଲା କରିବାକୁ ନିଷ୍ପତ୍ତି ନେଲା । ତେଣୁ ଛମୁକାର ବିଭିନ୍ନ ଅଞ୍ଚଳରୁ ସଂଗ୍ରାମୀ ନେତାସବୁ ବାଛା ହେଲେ । କଥା ହେଲା, ସେମାନଙ୍କ ନେତୃତ୍ୱରେ ହଜାର ହଜାର ପ୍ରଜା ମିଶି ରାଜା ଓ ଇଂରେଜ ସରକାରଙ୍କ ଅତ୍ୟାଚାରକୁ ମୁକାବିଲା କରିବାକୁ ସକାଳୁ ସକାଳୁ ବିଭିନ୍ନ ଜାଗାରେ ଏକାଠି ହେବେ । ପ୍ରଜାମେଳିର ନେତାମାନେ ହେଲେ ବର୍ତ୍ତିନୀ ଅଞ୍ଚଳରୁ ବିସୁନି ମଳୁଆଳ, ଉଦିଆ ରାଉତ ଓ ଅଗଣି ଦାସ; ତେନ୍ତୁଳିକୋଳିରୁ ବାସୁ ସେଠୀ; କାଟଣାରୁ ପ୍ରଭାକର ବେହେରା; ଡାଳିକାଏନ୍ଦାରୁ ଆନନ୍ଦ ଚନ୍ଦ୍ର ଜେନା; ଗୋବାଙ୍ଗରୁ ଉଦୟ ନାୟକ; ହଟିଆପଡ଼ା କୋରଇରୁ ପରମାନନ୍ଦ ମଳିକ,

ଆୟତନ ମହାଦେଇଆଡ଼ିଆରୁ ନରହରି ଦାସ ଇତ୍ୟାଦି । ଏମାନଙ୍କ ନେତୃତ୍ୱରେ ହଜାର ହଜାର ପ୍ରଜା ମେଘପୁରର ବକ୍ର ମହାକାଳୀ ମନ୍ଦିର ସମ୍ମୁଖ ପଡ଼ିଆରେ ଠୁଳ ହେବାକୁ ସ୍ଥିର ହେଲା ।

ଚିହ୍ନଟ ପାଇଁ ମେଳିଆମାନେ କପାଳରେ ସିନ୍ଦୂର ଲଗେଇବାକୁ କୁହାଯାଇଥାଏ ।

ଏପ୍ରିଲ୍ ୨୩ ତାରିଖ, ବୈଶାଖ ମାସର ଧୁ ଧୁ ଖରାବେଳ । ହଜାର ହଜାର ସଂଖ୍ୟାରେ ପ୍ରଜା ଠୁଳ ହେଲେ ପାଖାପାଖି ଦିନ ୧୨ଟାରେ ମେଘପୁର ଗାଁର ବକ୍ର ମହାକାଳୀଙ୍କ ମନ୍ଦିର ସମ୍ମୁଖରେ । କାହା ହାତରେ ମୁଦ୍‌ଗର ତ କାହା ହାତରେ ବିରାଟ ବାଉଁଶ ଲାଠି । କାହା ହାତରେ ବର୍ଚ୍ଛା ତ କାହା ହାତରେ ବାଟୁଳି । ଏମିତି ଯିଏ ଯାହା ପାଇଲା ଧରି ଧାଇଁ ଆସିଛି ରାଜାଙ୍କ ବିରୁଦ୍ଧରେ ଲଢ଼ିବାକୁ । ଅତ୍ୟାଚାର, ଶୋଷଣ ଓ ଜୁଲୁମ ବିରୁଦ୍ଧରେ ଏ ଲଢ଼େଇ ସମସ୍ତଙ୍କୁ ଟାଣି ଆଣିଲା ମା'ଙ୍କ ପୀଠକୁ । ମା'ଙ୍କ ସିନ୍ଦୂର କପାଳରେ ବୋଳି ପ୍ରଜାମାନେ ଭୟଙ୍କର ଦେଖାଗଲେ ।

ଅନ୍ୟପକ୍ଷରେ ରାଜାଙ୍କ ନୃଶଂସ ଅଫିସର ରାଧାଶ୍ୟାମ ଦାସ ଓ ପୋଲିସ୍ ବାହିନୀ ରାମଜାନି ନାମକ ଏକ ପ୍ରକାର ପାଲିଙ୍କିରେ ବସି ସକାଳୁ ସକାଳୁ ବାହାରି ପଡ଼ିଲେ ପ୍ରଜାଙ୍କୁ ସାବାଡ଼ କରିବାପାଇଁ । ସମସ୍ତଙ୍କ ଆଗରେ ରାଜାଙ୍କ ସଜ୍ଜିତ ହାତୀ । ପଛେ ପଛେ ଦେଶଦ୍ରୋହୀ, ଭ୍ରାତୃଦ୍ରୋହୀ ଗୁଣ୍ଡାବାହିନୀ । ପୋଲିସ୍ ହାତରେ ବନ୍ଧୁକ ଗୁଳି ଏବଂ ଗୁଣ୍ଡାଙ୍କ ହାତରେ ଖଣ୍ଡା, ବର୍ଚ୍ଛା ଓ ଲାଠି । ଆବଶ୍ୟକ ମୁତାବକ ଖାଦ୍ୟ, ପାନୀୟ ଓ ମାରଣାସ୍ତ୍ର ଧରି ସବ୍‌ଇନ୍‌ସପେକ୍ଟର, ଏସ୍. ପି. ଇତ୍ୟାଦି

ଚାଲିଲେ ପତରପୁର । ଜଳପଥରେ ମଧ୍ୟ କିଛି ପୋଲିସ୍ ଲଞ୍ଚ୍‌ଯୋଗେ ଚାଲିଲେ ।

**ରକ୍ତାକ୍ତ ବିପ୍ଳବ : ଏପ୍ରିଲ୍ ତେରଣ**

ସକାଳୁ ସକାଳୁ ରାଜାଙ୍କ ଲୋକ ଓ ପୋଲିସ୍ ଆୟତନର ଘରେ ଘରେ ଲୁଟ୍‌ତରାଜ ଆରମ୍ଭ କଲେ । କାନ୍ଥ ଦେଉଥିବା ଅବସ୍ଥାରେ କାହାକୁ ମାଡ଼ ଦେଇ ଗିରଫ୍ କଲେ ତ ବଳଦ ବାନ୍ଧୁଥିବାବେଳେ କାହାକୁ ମାଡ଼ଦେଇ ବାନ୍ଧି ପକେଇଲେ । ମେଳିଆ ପ୍ରଜାନେତା ଭଗବାନ ସୃତାରଙ୍କ ପ୍ରତି ଅତ୍ୟାଚାର ଆରମ୍ଭ କଲେ । ଏଥିରେ ରାଗି ତାଙ୍କ ମାଆ ଖଣ୍ଡାଧରି ପୋଲିସ୍‌କୁ ଗୋଡ଼େଇ ଆସିଲେ । ଜୟରାମ ରାୟ, ସୁନ୍ଦୁରି ଧଳ, ଶଂକର୍ଷଣ ରାୟଙ୍କ ଚାକର ଇତ୍ୟାଦି ଆଘାତ ପାଇଲେ । ନାରକୀୟ କାଣ୍ଡକରି ପୋଲିସ୍ ଫଉଜ ପତରପୁର ଅଭିମୁଖେ ଆଗେଇ ଚାଲିଲେ ।

ଶ୍ରୀ ଦାମୋଦର ଧଳ 'ଦେଶର ଗର୍ବ-ବାସୁ-ବିସୁନି' ବୋଲି ବହିଟିଏ ଲେଖିଛନ୍ତି । ଅପର ପକ୍ଷରେ ବର୍ତ୍ତନୀର ଦୀନବନ୍ଧୁ ଖଣ୍ଡାୟତ ରାୟଙ୍କ ଦାଣ୍ଡରେ ସକାଳୁ ସକାଳୁ ପ୍ରବଳ ଭିଡ଼ । ଏଥିରେ ଅଛି ହଜାର ହଜାର ଲୋକଙ୍କ ଦୃଷ୍ଟି ଥାଏ ବିସୁନି ମତୁଆଳ ଉପରେ । ସେ ଲାଠିଖେଳରେ ଓସ୍ତାଦ୍ । ବାଟୁଳି ମରାରେ ଧୁରନ୍ଧର । ଦି'ହାତରେ ଦି'ଟା ମୁଦ୍‌ଗର ଧରି ଖୁବ୍ ଜୋର୍‌ରେ ବୁଲେଇପାରେ । ବିସୁନି ହଜାର ହଜାର ଲୋକଙ୍କ ନେତା କହିଲେ ଚଳେ । ସେ ସେହି ବାହିନୀର ସେନାପତି । ଗାଧୁଆ ପାଧୁଆ ସାରି କଲିକତି ଗାମୁଛା ମୁଣ୍ଡରେ ଭିଡ଼ି କଂସେ ଜାଉରେ ଦି'ସେର କ୍ଷୀର ଦେଇ ଆକଣ୍ଠ ଗ୍ରାସ କରିଛି ସେ । ବଜ୍ର ମହାକାଳୀଙ୍କୁ ସ୍ମରଣ କରି ପୁଅ ନରେନ୍ଦ୍ର ଓ ଯୋଗେନ୍ଦ୍ରଙ୍କୁ ଟିକେ ଗେଲକରି ବାହାରିଲା ।

ସ୍ତ୍ରୀ ନାହିଁ କରୁ କରୁ ତାକୁ କହିଲା, ‘‘ଗାମୁଛା ଖଣ୍ଡେ ପାଇଁ ବକର ବକର ହଉଚୁ କାହିଁକି ? ଦେଶ ରହିଲେ କେତେ ଗାମୁଛା ମିଳିବ । ଆଜିଭଳି ଦିନ କ'ଣ ଆଉ ଆସିବ ? ମୁଁ ଯଦି ନ ଫେରେ, କାନ୍ଦିବୁ ନାଇଁ କହୁଛି ।’’ ଏହା ଶୁଣି ସ୍ତ୍ରୀ ଭେଁ କରି କାନ୍ଦି ଉଠିବାରୁ ତାକୁ ବୁଝା ସୁଝା କରି ବାଁ କାନ୍ଧରେ ଧନୁ ଓ ଶର ବାଟୁଳି, ମୁଣିଏ ଗୁଳି ଅଣ୍ଟାରେ ରଖି, ଡାହାଣ ହାତରେ ସିନ୍ଦୂରଲଗା କାଠର ଠେଙ୍ଗା ଧରି ସଜେଇ ହେଇ ପଡ଼ିଲା ବିସୁନି ।



ସ୍ତ୍ରୀ କାନ୍ଦିବାରୁ ତାକୁ କହିଲା, ‘‘ଠାକୁରଙ୍କୁ ଡାକ । ଆମେ ଯେମିତି ଲଢ଼େଇରେ ଜିତୁ । ମୁଁ ଯଦି ରଜାଘର ଲୋକଙ୍କୁ ଖତମ କରିପାରେ, ତୁ

ତ ଟିକେ ଶାନ୍ତିରେ ରହିବୁ !'' ଏଇ ସମୟରେ ଦାଣ୍ଡରେ କିଏ କହିଲା - ''ଆଇତନ ମହାପାତ୍ର ଭାଇକୁ ପୁଲିସ୍ ଗିରଫ କଲାଣି ।''

ଘର ଭିତରୁ ବିସୁନି ହୁଂକାର ଦେଇ ''ମା' ବନ୍ତ୍ର ମହାକାଳୀ ଜୟ'' କହି ଡେଇଁ ପଡ଼ିଲା ଲଢ଼େଇପାଇଁ । ସମସ୍ତଙ୍କୁ ପଛରେ ପକେଇ କିଳିକିଳାରବ ଦେଇ ଧାଇଁ ଚାଲୁଥାଏ ବିସୁନି ବର୍ଣ୍ଣନୀରୁ ପୋରଳ ଗାଁ ସେପଟ ପର୍ଯ୍ୟନ୍ତ ଲମ୍ବିଥିବା ଲୋକ ସମୁଦ୍ରକୁ ପାରହୋଇ ।

ଧୁ ଧୁ ଖରାବେଳ । ଝାଂଜି ପୂରା ପିଟୁଥାଏ । ଝାଳ ନାଳ ଆଣ୍ଠୁଏ ହୋଇ ସମସ୍ତେ ହୋ ହୋ ହେଉଥା'ନ୍ତି । ବିକଟାଳ ରଡ଼ିରେ ଗଗନ ପବନ ଫାଟି ପଡୁଥାଏ । ଚାରିଆଡ଼େ ଖାଲି ମୁଣ୍ଡମାଳ । ସୋରିଷ ପକେଇଲେ ତଳେ ପଡ଼ିବନି । ଆରପଟେ ଗୁଣ୍ଡୁଚିପଡ଼ା ଆଡ଼ିଆରେ ସକାଳୁ ପ୍ରବଳ ଭିଡ଼ । ଡାଳି-କାଏନ୍ଦା, ଗୋବାଙ୍ଗର ବିରାଡ଼ି ଛୁଆଟେ ବି ଏଠି ଆସି ହାଜର ।

ବାସୁ ସେଠୀ ସେ ପଟରେ ଥିବା ହଜାର ହଜାର ଲୋକଙ୍କ ଭିତରେ ଆଗୁଆ ନେତା । ସେ ବି ହୁଂକାର ଦେଉଥାଏ - ''ରାଜା କେତେ ବାଡ଼ିଆ ରଖିଛି ଛାଡ଼ ମୋ'ପାଖକୁ, ଦେଖି ନେବି ।'' ବାସୁ ସେଠୀକୁ ଗୋଟେ ପଟେ ଛାଡ଼ି ଦେଲେ ଏକୁଟିଆ ଅଧେ ସମ୍ଭାଳି ନେବ । ଆନନ୍ଦ ଜେନା, ଉଦିଆ ନାୟକ, ଲମ୍ବୋଦର ମହାପାତ୍ର ବୁଲି ବୁଲି ଲୋକଙ୍କୁ ସଜାଡୁ ଥା'ନ୍ତି । ବାସୁଆ ''ଏକା ମାଧିଆ ଚବିଶ ପଣ'' ପରି ।

ତେନ୍ତୁଳିକୋଳି ଗାଁର ଅରଣା ମଇଁଷିପରି ମାଡ଼ି ଆସୁଥାଏ ବାସୁ ସେଠୀ । ବିଚରା ତା'ଉପରେ ରାଜାଙ୍କର ଭୀଷଣ ରାଗ । ରଜାଘର ଯେତେ କାମଦାମ ପଡ଼ିବ, ସବୁରେ ବେଶି ଲୁଗା କାଟିବ, ସବୁଠୁ ବେଶି କାଠ ଚିରିବ ସେଇ ବାସୁ ସେଠୀ । ହିନସ୍ତା ଜୀବନକୁ ନେଇ ତିନି ଓଳି

ଉପାସ ତ ଓଳିଏ ଢାଉ ଖାଇ ଖାଇ ବଞ୍ଚିଛି ସେ । ବାପ ଅମଳରୁ ଯାହା ଜମିବାଡ଼ି ଥିଲା - ସବୁ ରଜା ଦଖଲକୁ ନେଇଗଲେ ।

ତେଣୁ ସେ ଆଜି ପାଗଳ । ମରିବ ନ ହେଲେ ମାରିବ । ତା'ବାପ ମଧ୍ୟ ପୂର୍ବ ମେଳିରେ ମାଡ଼ ଖାଇ ଲେଙ୍ଗଡ଼ା ହେଇଗଲା ପଛେ ନଇଁଲା ନାହିଁ । ବାସୁଆ ତା' ବାପଠାରୁ ବି ଟାଣ ଥିଲା ।

'ଦୁଃଖିନୀ କନିକା' ତା'ର ମୁଖସ୍ଥ । ତେଣୁ ସେ ଢାଉ, କଳମ ଶାଗ ଭଜା ଖାଇ ଠେଙ୍ଗାରେ ସିନ୍ଦୂର ମାରି କଞ୍ଚା ଦୁଧରେ ଧୋଇ କାନ୍ଧରେ ପକେଇ ବାହାରିଲାଣି ରଜା ଲଢ଼େଇକୁ । ନ ପାରିଲା କାମକୁ ପାରିବା ପଣ ତା'ର । ବନିକାଠ ଗଡ଼କୁ ସୁରୁଜା ପିଆଦା ନେଇଯିବା ଦିନଠୁଁ ସେ ମଳିଆ ପିନ୍ଧୁଚି ।

ସ୍ତ୍ରୀକୁ ପଚାରିଲା- ''ଠେଙ୍ଗା ନେବି ନା କୁରାଢ଼ି ନେବି ?'' ସ୍ତ୍ରୀ କହିଲା– ''କୁରାଢ଼ି କାହିଁକି ନବ ? ଠେଙ୍ଗା ଧଇଲେ ତ ତମ ପାଖ କେହି ପଶି ପାରିବେନି ।'' ବାସୁଆ କହିଲା– ''ଠିକ୍ କହିଚୁ । ଠେଙ୍ଗା ନେବି । ଯଦି ମୁଁ ନ ଫେରେ ତେବେ ଏଇ କୁରାଢ଼ୀ ତୋ ଇଜ୍ଜତ ରଖିବ ।''

ଏତିକି କହି ''ଜୟ ବକ୍ର ମହାକାଳୀ'' କହିବା ସଙ୍ଗେ ସଙ୍ଗେ ଡେଇଁ ପଡ଼ିଲା ଲୋକସମୁଦ୍ରକୁ ବାସୁ ସେଠି । ଚାରିଆଡ଼େ ଲୋକାରଣ୍ୟ । ମେଘପୁର, ବର୍ଦ୍ଧନୀ, ଯୋରଳ, ତେନ୍ତୁଳିକୋଳି, ଡାଳିକାଏନ୍ଧା ଇତ୍ୟାଦି ଗାଁରୁ ଧାଇଁ ଆସିଛନ୍ତି ଲୋକେ ମେଘପୁର ମା' ବକ୍ର ମହାକାଳୀଙ୍କ ପୀଠକୁ ।

ଲୋକସମୁଦ୍ର ଦେଖି ପତରପୁର ନ ଯାଇ ତାଙ୍କୁ ଡରେଇବା ପାଇଁ ମେଘପୁର ଗାଁଆଡ଼େ ମୁହେଁଇଲେ ପୁଲିସ୍‌ବାହିନୀ ସବୁ ରାଜଭକ୍ତ ଦେଶଦ୍ରୋହୀ ଲୋକଙ୍କୁ ସାଙ୍ଗରେ ନେଇ ।

ମେଳିଆଙ୍କ ପ୍ରଧାନ ଆଡ୍‌ଡା ମେଘପୁର ଗାଁରେ ହଇଚଇ ସୃଷ୍ଟି

ହୋଇଗଲା । ମେଘପୁରର ଦକ୍ଷିଣ ମୁଣ୍ଡ ବକ୍ର ମହାକାଳୀଙ୍କୁ ଚିହ୍ନଟ ରଖି ପୋଲିସ୍‌ବାହିନୀ ଆଗେଇ ଆସୁଥିବାର ଦେଖି ଘମାଘୋଟ ଲଢ଼େଇ ହେବ ବୋଲି ଲୋକେ ସତର୍କ ହୋଇଗଲେ ।

ବିସୁନି ମଲୁଆଳ ପାଟିକରି ଉଠିଲା - ''ଭାଇମାନେ, କେହି ଡର ନାହିଁ । ଫଉଜର ବନ୍ଧୁକ ଥିଲେ ଆମର ଅଛି ଠେଙ୍ଗା, ବାଟୁଳି, ଟେଣ୍ଟା, ଫାର୍ଶା, ଟେକା, ପଥର, ଡେଣୁଆ । ଯାହା ପାଉଚ ନିଜ ନିଜ ହାତରେ ଧରି ସମସ୍ତେ ମାଡ଼ି ଆସ । ମୁଁ ଆଗରେ ଅଛି । ଭଜିଆ'ଇ ମୋ' ସାଥିରେ ଅଛି । କନିକା ରାଜା ଦେଖୁ, ପୁଲିସ୍ ଦେଖୁ, ଦୁନିଆ ଦେଖୁ, କନିକା ପ୍ରଜା ଭେଡ଼ି ନୁହେଁ, ସେ ସିଂହ । ସେ ମରିବ ନତୁବା ମାରିବ । ପ୍ରଜାଙ୍କ ପାଇଁ ଲଢ଼େଇ କରିବ ହିଁ କରିବ ।''

ଫଉଜ ମେଘପୁର ଗାଁରେ ପଶି ଲୁଟ୍‌ତରାଜ ଆରମ୍ଭ କଲା । ସୁନାରୂପା ମୂଲ୍ୟବାନ୍ ପଦାର୍ଥସବୁ ପୋଲିସ୍ ନେଇ ଯାଉଥାନ୍ତି ତ ରାଜା ଗୁଣ୍ଡାମାନେ ଘରକରଣା ଜିନିଷସବୁ ଲୁଟ୍ କରୁଥାଆନ୍ତି ।

'ଦୁଃଖିନୀ କନିକା' ବହି ପାଇବା ପାଇଁ ଗଙ୍ଗାଧର ପଣ୍ଡାଙ୍କ ଘର ଭିତରେ ପଶି ଛାରଖାର କରିଦେଲେ ସିନା କିଛି ପାଇଲେ ନାହିଁ ।

ଫଉଜ ବାହାରି ପଡ଼ିଲେ ବେବର୍ତ୍ତା ସରୋବର ପାଖ ହୁଡ଼ାକୁ । ଯୁଆଡ଼େ ଚାହିଁବ ଜନସମୁଦ୍ର - ପାଞ୍ଚ ଦଶ ହଜାର ଲୋକଙ୍କ ମୁଣ୍ଡମାଳ ଖରାରେ ଚିକ୍ ଚିକ୍ କରି ମାଡ଼ି ଆସୁଥାଏ । ଧୁ ଧୁ ଖରାବେଳ । ଲୋକେ କିଛି ଖାତିର୍ କରୁ ନ ଥା'ନ୍ତି । ତାଙ୍କର ଗୋଟିଏ ନିଶା – ଲଢ଼େଇ କରିବା ।

ଉଦୟ ନାୟକ ସାହେବଙ୍କ ମୁଣ୍ଡକୁ ଲକ୍ଷ୍ୟକରି ଟେକା ପକେଇଲେ । କିନ୍ତୁ ତାହା ସାହେବଙ୍କ ମୁଣ୍ଡ ଟୋପିରେ ବାଜିବାରୁ ସେ ବଞ୍ଚିଗଲେ ସତ, ହେଲେ ଖୁବ୍ ରାଗି ଗଲେ । ସୁବେଦାରକୁ କହି ବିଗୁଲ୍

ବଜାଇବାରୁ ମାଡ଼ି ଆସିଲେ ପୋଲିସ୍‌ବାହିନୀ । ପୋଲିସ୍‌ର ଫାଙ୍କା ଆଓ୍ୱାଜ୍‌ରେ ବିସୁନି ଡରି ନ ଥିଲା । ଚାହିଁଥିଲେ ସେ ଖସିଯାଇ ପାରି ଥାଆନ୍ତା । ହେଲେ ସେ ଗଲା ନାହିଁ । ଭାବିଲା, ବନ୍ଧୁକ ପାଖରେ ତା'ଲାଠି କିଛି ନ ହେଲେ ବି ଦେଶ ପାଇଁ, କନିକା ପାଇଁ ସେ କିଛି ନ କରି ପଳେଇବ କେମିତି ? ସେ ଭୀରୁ ହବ ନାଇଁ । ମରିବ ପଛେ ଶତ୍ରୁଙ୍କୁ ପିଟି ପିଟି ମାରି ଦେବ ।

ତେଣୁ ଡାକ ଛାଡ଼ିଲା, "ଭାଇମାନେ - ନିତି ମରିବା ଅପେକ୍ଷା ଗୋଟିଏ ଥର ମରିବା ଆସ । ଡର ନାହିଁ ।" ସତକୁ ସତ ହଜାର ହଜାର ପ୍ରଜାଙ୍କ ଲାଠିମାଡ଼ରେ ଛାନିଆ ହେଲେ ରାଜାପକ୍ଷ ଲୋକେ । ବିସୁନି ଲାଠି ବୁଲେଇ ଧାଇଁ ଚାଲିଲା ସାହେବଆଡ଼େ ।

ରାଜାଲୋକେ ପ୍ରଜାଙ୍କ ଲାଠିମାଡ଼ରେ ଦରମରା ହେଲେ । ଉପାୟ ନ ପାଇ ପୋଲିସ୍ ସାହେବ ଅର୍ଡ଼ର ଦେଲେ – "ଫାୟାର୍, ଫାୟାର୍" । ଚାଲିଲା ଆଖିବୁଜା ଗୁଳି - ତଳକୁ, ଉପରକୁ ଓ ମଝିକୁ ।

ବିସୁନି ଧରିଥିବା ଠେଙ୍ଗାକୁ ବୁଲେଇ ବୁଲେଇ ପୋଲିସ୍ ଉପରକୁ ଫୋପାଡୁଥିବାବେଳେ ତା' ପେଟରେ ବାଜିଲା ଗୁଳି । "ଜୟ ବଜ୍ର ମହାକାଳୀ" କହି ଟଳି ପଡ଼ିଲା ବିସୁନି ବେବର୍ତ୍ତା ସରୋବରର ପାଣି ଭିତରକୁ । ପାଣି ସବୁ ଲାଲ୍ ହେଇଗଲା ବିସୁନିର ଦେଶପ୍ରୀତିବୋଳା ବିପ୍ଲବୀ ରକ୍ତରେ ।

ଏ ଘଟଣା ଦେଖି ଯୋରଳ ଗାଁ ଭିତରୁ ବାସୁ ସେଠୀକୁ ଫେରିଯିବାକୁ କହିଲେ ଗାଁଲୋକେ । ହେଲେ ବାସୁ ଫେରିଲାନି । ସେ ବି ଜନସମୁଦ୍ର ଚପି ଧାଇଁଲା ପୋଲିସ୍‌ଆଡ଼େ । ବିସୁନିସହ ୨୬ ଜଣ ଲୋକ ଗୁଳିରେ ମଲେ ମଧ ବାସୁ ସେଠୀ ନ ଡ଼ରି ଲାଠି ବୁଲେଇ ବୁଲେଇ ରାଜପକ୍ଷ ଲୋକଙ୍କୁ

ପିଟି ପିଟି ମାରିଦେବାକୁ ଆଗେଇ ଆସିଲା । ତା'ଦେହରେ ଟୋପାଏ ରକ୍ତ ଥିବାପର୍ଯ୍ୟନ୍ତ ସେ ପଛେଇ ଯିବନି । ବାସୁ ଭାବିଲା ଯିଏ ରଜାଘର ଲୋକ ହାବୁଡ଼ରେ ପଡ଼ିବ ତାକୁ ଆଗେ ଖତମ୍ କରିବ ।

ଦେଖିଲା ପୋଲିସ୍ ତିନି ଚାରିଜଣଙ୍କୁ ପିଟୁଚି - ସମ୍ଭାଳି ପାରିଲାନି ବାସୁ । ସେ ସିପେଇ ଉପରେ ପାହାରଟିଏ କଷିଦେଲା । ହେଲେ ତା'ପଛପଟରୁ ଗୋଟେ ଗୁଳି ବାଜିଲା ବାସୁ ପିଠିରେ । ତଥାପି ବାସୁ ପିଟିଥିଲା ପୁଣି ଏକ ଶକ୍ତ ପାହାର । ପୁଣି ବାସୁ ପିଠିରେ ବାଜିଲା ଆଉ ଏକ ଗୁଳି । ସେ ଆଉ ସମ୍ଭାଳି ପାରିଲାନି । ସେଇଠି ଟଳି ପଡ଼ିଲା । ସୁବେଦାର ତାକୁ ବାଏନଟ୍‌ର ଛୁରି ଭୂଷି ଦେଲେ ।

ବାସୁ-ବିସୁନି ଦେଶପାଇଁ ସହିଦ୍ ହେଲେ । ପ୍ରଜାଭାଇଙ୍କ ପାଇଁ ଲଢ଼ି ଲଢ଼ି ପିଲାଛୁଆଙ୍କୁ ସେ ଭସେଇ ଦେଲେ ଅଗାଧ ଦୁଃଖସମୁଦ୍ରରେ । ହେଲେ ଦେଶପାଇଁ ତାଙ୍କ ମୃତ୍ୟୁ ହିଁ ସାର୍ଥକତା ଆଣିଦେଲା । ସେମାନେ କନିକାର ଗର୍ବ, ଦେଶର ଗୌରବ ଓ ଅସହଯୋଗ ଆନ୍ଦୋଳନରେ ପ୍ରଥମ ଓଡ଼ିଆ ସହିଦ୍ ହୋଇଗଲେ ।

୧୯୨୦ରୁ ୧୯୨୨ ମସିହାଯାଏ କୌଣସି ଗୁଳିକାଣ୍ଡ ଓଡ଼ିଶାରେ ହୋଇ ନାହିଁ । ୧୯୨୦ରୁ ୧୯୩୦ ଭିତରେ ଭାରତର ଅସହଯୋଗ ଆନ୍ଦୋଳନ ଚାଲିଥିବାରୁ ବ୍ରିଟିଶ୍ ଗୁଳିଚୋଟରେ ୧୯୨୨ ଏପ୍ରିଲ୍ ୨୩ ତାରିଖରେ ବାସୁ-ବିସୁନି ସହିଦ୍ ହୋଇଥିଲେ । ଲୋକଙ୍କ ମନରେ ବାସୁ-ବିସୁନି ସହିଦ୍ ହେବା ଏକ ନୂତନ ଉନ୍ମାଦନା ଆଣିଦେଲା । ଏହି ଦୁଇ ବିପ୍ଳବୀ ଯେ, ଦେଶପାଇଁ ସହିଦ୍ ହୋଇପାରିଲେ ତାହା ହିଁ କନିକାର ଗର୍ବ ଓ ଜାତିର ଗୌରବ । ସେ ମହାନ୍ ଆତ୍ମାଦ୍ୱୟ ଚିରଦିନ ଅମର - ତାଙ୍କୁ କୋଟି ନମସ୍କାର ।

***